# PROGRESSIVE GRAMMAR,

IN URIYA.

PART I.

BY

TRILOCHAN MISRA,

DEPUTY INSPECTOR OF [illegible]

Third Edition

Revised and Enlarged.

# ସଂକ୍ଷିପ୍ତ ବ୍ୟାକରଣ ।

ପ୍ରଥମାଂଶ

ତୃତୀୟ ସଂସ୍କରଣ

[illegible]

[illegible]

ଶ୍ରୀ ତ୍ରିଲୋଚନ ମିଶ୍ର ଦ୍ୱାରା ପ୍ରଣୀତ ।

PRINTED AT THE RAY PRESS

CUTTACK.

1891.

Price Two Annas. ମୂଲ୍ୟ ଦୁଇଅଣା ।

## ଭୂମିକା ।

ଶିକ୍ଷକ ମହାଶୟମାନଙ୍କୁ ଉତ୍ତମରୂପେ ବିଦିତ ଅଛି ଯେ, ଅନ୍ୱୟ ବ୍ୟାକରଣର ମୁଖ୍ୟ ବିଷୟ ଅଟେ । ତାହା ପ୍ରଚଳିତ ବ୍ୟାକରଣମାନଙ୍କରେ ନ ଥିବାରୁ ଆମ୍ଭେ ୧୮୮୫ ସାଲରେ "ସଂକ୍ଷିପ୍ତ ବ୍ୟାକରଣ" ନାମରେ ଖଣ୍ଡେ କ୍ଷୁଦ୍ର ପୁସ୍ତକ ରଚନା କରି ଆପଣା ବ୍ୟୟରେ ୧୦୦୦ ଖଣ୍ଡ ମୁଦ୍ରିତ କରାଇଲୁଁ । ସେ ସବୁ ସତ୍ୱର ବିକ୍ରୟ ହେବା ଦେଖି ମନରେ ଏହି ଆଶା ଜନ୍ମିଲା କି ଏହି ପୁସ୍ତକ ଛାତ୍ରମାନଙ୍କ ପକ୍ଷରେ [illegible]ର୍ଥରେ କାର୍ଯ୍ୟୋପଯୋଗୀ ହୋଇଅଛି । ଏଣୁ କରି ଦ୍ୱିତୀୟ-ସଂସ୍କରଣରେ ଆମ୍ଭେ ପରିଶ୍ରମ ସହକାରେ ଯେଉଁ ପୁସ୍ତକର ଯେଉଁ ୨ ସ୍ଥାନରେ ଅଶୁଦ୍ଧ ଥିଲା, ତାହା ସଂଶୋଧନ କରି ଅନାବଶ୍ୟକ ବିଷୟ-ଗୁଡ଼ିକ ତ୍ୟାଗ କରୁଅଛୁଁ । ଅନ୍ୟାନ୍ୟ ବ୍ୟାକରଣରେ ପ୍ରଥମତଃ ବର୍ଣ୍ଣ-ବିଭାଗ, ସନ୍ଧି, ଶବ୍ଦବିଧି, ଷତ୍ୱବିଧି କ୍ରମରେ ଲେଖା ଯାଇଥିବାରୁ ସୁକୁ-[illegible]ରମତି ଛାତ୍ରମାନଙ୍କ ବ୍ୟାକରଣ ଶିକ୍ଷାରେ ଏକାନ୍ତ ବିରାଗ ଜନ୍ମେ । ସେମାନେ ବହୁକାଳ ଅଧ୍ୟୟନ କଲେହେଁ ଶବ୍ଦଭେଦ ପର୍ଯ୍ୟନ୍ତ ଉତ୍ତମ-ରୂପେ ଜାଣି ପାରନ୍ତି ନାହିଁ; ଅଉ ଅନ୍ୱୟ କଲା ସମୟରେ କ୍ରିୟାପଦକୁ [illegible], ବିଶେଷଣକୁ ସର୍ବନାମ ଏହିରୂପେ କହନ୍ତି । ଏହି ଦୋଷ ପରି-ହାରାର୍ଥେ ଆମ୍ଭେ ଏହି ସଂସ୍କରଣର ସର୍ବାଗ୍ରେ "ବ୍ୟାକରଣର ପୂର୍ବଶିକ୍ଷା" ବୋଲି ଏକ ବିଭାଗ କରି ତହିଁରେ ଶବ୍ଦଭେଦ ବିଷୟ ଉତ୍ତମରୂପେ ଲେଖିଅଛୁଁ । ଏହା ପଢ଼ିଲାପରେ ଛାତ୍ରମାନେ ଅନାୟାସରେ ବ୍ୟାକ-[illegible] ଆରମ୍ଭ କରି ପାରିବେ ।

[illegible]କମାନଙ୍କୁ ଅନୁରୋଧ ଯେ ଶବ୍ଦଭେଦ ସମ୍ପର୍କୀୟ ରୀତିକୁ [illegible] କରାଇବେ ।

ଏହି ପୁସ୍ତକ ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଶ୍ରେଣୀର ଛାତ୍ରମାନେ ଶିକ୍ଷା କରି ପାରିବେ । ଦ୍ୱିତୀୟରେ କେବଳ କର୍ତ୍ତା ଓ କ୍ରିୟା, ତୃତୀୟରେ ଶବ୍ଦଭେଦ ଓ ଚତୁର୍ଥରେ ପୂର୍ଣ୍ଣ ଅନ୍ୱୟ ଜାଣିବା ଉଚିତ ।

ତୃତୀୟ ସଂସ୍କରଣ ।

ଏ ସଂସ୍କରଣରେ ଆମ୍ଭର ପରମବନ୍ଧୁ ବାବୁ ଦାଶରଥି ପାଣିଗ୍ରାହି ବି ଏ, ପ୍ରଥମ ଅସିଷ୍ଟାଣ୍ଟ ହାଇସ୍କୁଲ ସମ୍ବଲପୁର; ବାବୁ ନୀଳମଣି ବିଦ୍ୟାରତ୍ନ ମ୍ୟାନେଜର "ସମ୍ବଲପୁର ହିତୈଷିଣୀ" ବାମଣ୍ଡା; ଓ ବିଶ୍ୱନାଥ କର ହେଡ଼ ମାଷ୍ଟର, ଟାଉନସ୍କୁଲ, କଟକ ପୁସ୍ତକଟିକୁ ଦେଖି ଯେଉଁ ଯେଉଁ ସ୍ଥାନ ଅସଙ୍ଗତ ଥିଲା ସେ ସବୁ ଅନୁଗ୍ରହପୂର୍ବକ ସଂଶୋଧନ କରି ଦେଇ ଆମ୍ଭର ଅଶେଷ କୃତଜ୍ଞତାର ପାତ୍ର ହୋଇଅଛନ୍ତି । ଶବ୍ଦଭେଦ [illegible] ଗାଢ଼ କଷ୍ଟ ଓ କଠିନ ହେବାରୁ ଛାତ୍ରପରୀକ୍ଷାରେ [illegible] ସରଳ ରୀତି ଦେଇଅଛୁଁ । ଇତି ।

ସମ୍ବଲପୁର
୨୧ । ୭ । ୯୮

ଶ୍ରୀ ତ୍ରିଲୋଚନ ମିଶ୍ର
ଡେପୁଟି ଇନସ୍ପେକ୍ଟର

ଶବ୍ଦଭେଦ ବିଷୟକ ଗୀତ ।

ତୃତୀୟ ଓ ଚତୁର୍ଥ ଶ୍ରେଣୀ ସକାଶେ ।

ମନ ଦେଇ ଶୁଣ ଶିଶୁ ବଚନ ମୋହର ।
ଶବ୍ଦଭେଦ ଜ୍ଞାନ ହେବ ଅବଶ୍ୟ ସତ୍ୱର ।
ବିଶେଷ୍ୟ ଓ ବିଶେଷଣ କ୍ରିୟା ସର୍ବନାମ ।
ଅବ୍ୟୟ ସହିତେ ଶବ୍ଦ ପାଞ୍ଚଭାଗ ଜାଣ । ୨ ।
ବିଶେଷ୍ୟ ଦୃଶ୍ୟ ଅଦୃଶ୍ୟ ସବୁ ଦ୍ରବ୍ୟ ନାମ ।
ପାପ, ପୁଣ୍ୟ, ଅଶ୍ୱ, ସ୍ୱର୍ଗ, ପର୍ବତ, ଶ୍ରୀରାମ । ୩ ।
ବିଶେଷ୍ୟ ସ୍ଥାନରେ ଯେଉଁ ଶବଦ ବସଇ ।
ସର୍ବନାମ ବୋଲି ତାକୁ ବ୍ୟାକରଣେ କହି । ୪ ।
ଆମ୍ଭେ, ତୁମ୍ଭେ, ଯେ, ସେ, ତାହା, ତୋହର, ତାହାର ।
ଯାହାକୁ, ତାହାକୁ, ମୋତେ, ଆପଣ କାହାର । ୫ ।
ବିଶେଷ୍ୟ ଗୁଣକୁ ଯେଉଁ ଶବ୍ଦ ପ୍ରକାଶଇ ।
ବିଶେଷଣ ବୋଲି ସେହି ଶବଦକୁ କହି । ୬ ।
ଉତ୍ତମ, ସୁନ୍ଦର, ଧୀର, ନୀଳ, ଦୁରାଗ୍ଧର ।
ଉଚ୍ଚ, ନୀଚ, ମନ୍ଦ, ଆଦି ଦୃଷ୍ଟାନ୍ତ ତାହାର । ୭ ।
କରିବା, ହୋଇବା, ଥିବା, ଧାତୁ ଅର୍ଥ ହେତେ ।
ସୁକୁମାରମତି ଶିଶୁ କ୍ରିୟା ଜାଣ ତେବେ । ୮ ।
ଖେଳିଲା, ଗଲା, ବସୁଅଛି, ଦେଖ, କରୁଥିବ ।
…ଛି, ପଢ଼ନ୍ତା, ହେବ, ଯିବ, ବସୁଥିବ । ୯ ।
…ଷ୍ୟ ଓ ସର୍ବନାମ, କ୍ରିୟା, ବିଶେଷଣ ।
…ମାନଙ୍କୁ ଛାଡ଼ି ସବୁ ଅବ୍ୟୟରେ ଗଣ । ୧୦ ।
…ବେ, ବେଗେ, ମନ୍ଦ, ଧୀରେ, ଆଉ, କିନ୍ତୁ, ଯଥା ।
…ପରି, କିପରି, ପୁନଃ, ମାତ୍ର, ମଧ୍ୟ, ତଥା । ୧୧ ।

( । ୧)

ଅନ୍ତା, ଓଡ୍ରୋ, ଛିଣ୍ଟି, ଧକ, ଉତ୍ତ୍ରାରୁ, ଉତ୍ତାରେ ।
ପଛେ, ପରେ, ବ୍ୟତିରେକେ, ଦ୍ୱାସ୍ଥ ଦ୍ୱାସ୍ଥ, ବାରେ ।



# ସଂକ୍ଷିପ୍ତ ବ୍ୟାକରଣ ।

## ବ୍ୟାକରଣର ପୂର୍ବଶିକ୍ଷା ।

ଯେଉଁ ଶାସ୍ତ୍ର ଜାଣିଲେ ଭାଷା ଓ ଲେଖା ଉଭୟ ଶୁଦ୍ଧ ହୁଏ ସେହି ଶାସ୍ତ୍ରକୁ ବ୍ୟାକରଣ ବୋଲାଯାଏ ।

କଥନ ବା ଲିଖନରେ ମନୋଗତ ଭାବ ପ୍ରକାଶ କରାଯାଇ ପାରେ, କଥନକୁ ଶବ୍ଦ ସମ୍ମିଳନ କରି ଓ ଲିଖନକୁ ଶବ୍ଦ ସଙ୍ଗଠନରେ ବର୍ଣ୍ଣ ପ୍ରୟୋଗ କରି ପ୍ରକାଶ କରିବାକୁ ହୁଏ ।

ଅ, ଆ, କ, ଖ ଇତ୍ୟାଦିକୁ ବର୍ଣ୍ଣ କହନ୍ତି, ବର୍ଣ୍ଣ ଉଚ୍ଚାରଣର ସଙ୍କେତ ମାତ୍ର ।

ଏକ ବା ତତୋଽଧିକ ବର୍ଣ୍ଣ ମିଳିତ ହୋଇ ଅର୍ଥବୋଧକ ହୋଇଲେ ତାହାକୁ ଶବ୍ଦ କହନ୍ତି; ଯଥା, ଖ, ଚନ୍ଦ୍ର, କାଗଜ, ଇତ୍ୟାଦି । ଶବ୍ଦରେ ବିଭକ୍ତି ଯୋଗ କଲେ ପଦ ହୁଏ ।

କେତେକ ପଦ ଏକତ୍ରିତ ହୋଇ ସମ୍ପୂର୍ଣ୍ଣ ଅର୍ଥବୋଧକ ହେଲେ ତାହାକୁ ବାକ୍ୟ କହନ୍ତି; ଯଥା, ବାଳକ ବିଦ୍ୟାଳୟକୁ ଯାଉଅଛି । ପଦ ପାଞ୍ଚପ୍ରକାର; ଯଥା, ବିଶେଷ୍ୟ, ସର୍ବନାମ, ବିଶେଷଣ, କ୍ରିୟା ଏବଂ ଅବ୍ୟୟ ।

ଅବ୍ୟୟ ମଧ୍ୟରେ କ୍ରିୟାବିଶେଷଣ, ସଂଯୋଜକ, ବିଭକ୍ତିସୂଚକ ଅବ୍ୟୟ ବା ପାର୍ଶ୍ୱବର୍ତ୍ତୀ, ବିସ୍ମୟ ବା ଖେଦସୂଚକ ଆଦି ଅବ୍ୟୟ ଆସୁଅଛି ।

## ବିଶେଷ୍ୟ ବା ସଞ୍ଜ୍ଞା ।

୯ । ପଦାର୍ଥର ନାମକୁ ବିଶେଷ୍ୟ କହନ୍ତି; ଯଥା, ରାମ, କ[illegible]
କଲମ, ଅଶ୍ୱ, ସମସ୍ତ, ପୁଣ୍ୟ ଇତ୍ୟାଦି ।

୧୦ । ପଦାର୍ଥର ନାମ ବିଶେଷ୍ୟ ଅଟେ, ମାତ୍ର ପଦାର୍ଥ ନଜେ ବି[illegible]
ନୁହେ ।

୧ । ରାମ—ବିଶେଷ୍ୟ କାରଣ ଏହା ଏକ ବ୍ୟକ୍ତିର ନା[illegible]
୨ । କଟକ— ,, କାରଣ ଏହା ଏକ ସ୍ଥାନର ନାମ ଅ[illegible]
୩ । କଲମ— ,, କାରଣ ଏହା ଏକ ପଦାର୍ଥର ନାମ ଅ[illegible]
୪ । ଅଶ୍ୱ— ,, କାରଣ ଏହା ଏକ ଜନ୍ତୁର ନାମ ଅଟେ[illegible]
୫ । ସମସ୍ତ— ,, କାରଣ ଏହା ଏକ ପଦାର୍ଥର ନାମ ଅ[illegible]
୬ । ପୁଣ୍ୟ— ,, କାରଣ ଏହା ଏକ ପଦାର୍ଥର ନାମ ଅ[illegible]

## ପ୍ରଶ୍ନ ।

ବ୍ୟାକରଣ କାହାକୁ ବୋଲନ୍ତି ? ଶବ୍ଦ ଓ ପଦରେ ପ୍ରଭେଦ [illegible] ପଦ କେତେ ପ୍ରକାର ? ବିଶେଷ୍ୟ କାହାକୁ କହନ୍ତି ? ପଦା[illegible] ନଜେ ବିଶେଷ୍ୟ ? ଯଦି ନୁହେ ତେବେ କଣ ବିଶେଷ୍ୟ ଅଟେ ?

ନିମ୍ନଲିଖିତ ପଦାର୍ଥ ସକଳର ନାମ କହି ସେ ସବୁ [illegible] ହେବାର ହେତୁ କଣ କହ ।

୧ । ସ୍କୁଲ ଭିତରର ପଦାର୍ଥ । ୬ । ଦେଖିଥିବା ବା ଶୁଣିଥିବା ସ୍ଥ[illegible]
୨ । ଖେଳିବା ସ୍ଥାନର ପଦାର୍ଥ । ୭ । ଜାଣିଥିବା ଜନ୍ତୁ ।
୩ । ଗୃହ ସାମଗ୍ରୀ । ୮ । ସପ୍ତାହର ଦିନ ।
୪ । କ୍ଷେତ୍ରର ପଦାର୍ଥ । ୯ । ବର୍ଷର ମାସ ।
୫ । ନଦୀରେ ଥିବା ପଦାର୍ଥ । ୧୦ । ଭୋଜନ ପଦାର୍ଥ ।

ନିମ୍ନଲିଖିତ ବାକ୍ୟସମୂହରୁ ବିଶେଷ୍ୟ ବାହାର କର ।

ରାମ ପାଠ ପଢୁଅଛି । ବାଳକ ଅନ୍ନ ଭୋଜନ କରୁଅଛି । କ[illegible]

ଙ୍କ ଅସିଅଛୁ । ପକ୍ଷିମାନେ ବୃକ୍ଷରେ ବସିଅଛନ୍ତି । ବର୍ଷାକାଳରେ ଣୀ ସବୁ ଜଳପୂର୍ଣ୍ଣ ହୋଇଥାଏ । ଘୃହା ଚୀନଦେଶରେ ଉତ୍ପନ୍ନ ଏ । ବାଳକମାନେ ନଦୀରେ ସ୍ନାନ କରୁଥିଲେ । ମତ୍ସ୍ୟ ସବୁ ଜଳରେ କ୍ରୀଡ଼ା କରୁଅଛନ୍ତି । ଆଫ୍ରିକା ମଧ୍ୟ ଦେଶରେ ସିଂହ ପ୍ରାପ୍ତ

---

## ସର୍ବନାମ ।

ଯେଉଁ ଶବ୍ଦ ବିଶେଷ୍ୟର ବଦଳରେ ବ୍ୟବହାର କରାଯାଏ ତାହାକୁ ସର୍ବନାମ କହନ୍ତି; ଯଥା, ରାମ ବିଦ୍ୟାଳୟରେ ପଢ଼ୁଅଛି, ତାହାକୁ ଡାକ । ଏଠାରେ ତାହାକୁ ସର୍ବନାମ କାରଣ ଏହା ରାମ ବିଶେଷ୍ୟ ବଦଳରେ ବ୍ୟବହାର କରା ଯାଇଅଛି ।

୧ । ବାଳକ କହିଲା ମୁଁ କାଲି ଆସିବି—ସର୍ବନାମ ମୁଁ—କାରଣ ବାଳକ ବିଶେଷ୍ୟ ବଦଳରେ ମୁଁ ବସିଅଛି ।

୨ । ହରି ପାଠ ଶିଖି ନ ଥିବାରୁ ଶିକ୍ଷକ ତାହାକୁ ଦଣ୍ଡ ଦେଲେ—ସର୍ବନାମ ତାହାକୁ—କାରଣ ହରି ବିଶେଷ୍ୟ ବଦଳରେ ବ୍ୟବହୃତ ହୋଇଅଛି ।

୩ । ରାମ ସ୍କୁଲକୁ ଯାଇ ଆପଣା ପାଠ ପଢ଼ିଲା—ସର୍ବନାମ ଆପଣା—କାରଣ ରାମ ଏହି ବିଶେଷ୍ୟ ସ୍ଥାନରେ ବ୍ୟବହୃତ ହୋଇଅଛି ।

୪ । ଏହି ରାଜା ନ୍ୟାୟପରାୟଣ ଏଣୁ କରି ସେ ପ୍ରଜାପୀଡ଼ନ କରନ୍ତି ନାହିଁ—ସର୍ବନାମ ସେ—କାରଣ ରାଜା ଏହି ବିଶେଷ୍ୟ ସ୍ଥାନରେ ବସିଅଛି ।

୫ । ଶିକ୍ଷକ ଛାତ୍ରମାନଙ୍କୁ କହିଲେ ତୁମ୍ଭେମାନେ ଘେରୁଛ କି ଅ—ସର୍ବନାମ ତୁମ୍ଭେମାନେ—କାରଣ "ଛାତ୍ରମାନଙ୍କୁ" ଏହି ବିଶେଷ୍ୟ ସ୍ଥାନରେ ବସିଅଛି ।

ସର୍ବନାମ—ମୁଁ, ତୁ, ସେ, ଆମ୍ଭେ, ତୁମ୍ଭେ, ଆମ୍ଭମାନେ… ତାହାର, ମୋତେ, ଏମାନେ, କାହାକୁ, ଆପଣା, ଯେ, ତ… ଆପଣ ଇତ୍ୟାଦି।

ପ୍ରଶ୍ନ।

ସର୍ବନାମ କାହାକୁ କହନ୍ତି? ତିନିଗୋଟି ସର୍ବନାମ ଶବ୍ଦର ନା… କର।

ନିମ୍ନଲିଖିତ ବାକ୍ୟ ସବୁରେ ଥିବା ସର୍ବନାମ ବାହାର କରି… ବିଶେଷ୍ୟ ବଦଳରେ ବ୍ୟବହାର ହୋଇଅଛି କହ।

ଅଶ୍ୱ ଅତି ବ୍ୟବହାର୍ଯ୍ୟ ଜନ୍ତୁ; ଏଣୁକରି ଲୋକମାନେ ତାହା… ପୋଷନ୍ତି। ଶିକ୍ଷକ ବାଳକମାନଙ୍କୁ କହିଲେ, ଆଜି ଆମ୍ଭେ ତୁ… ମାନଙ୍କୁ ବ୍ୟାକରଣ ଶିକ୍ଷା ଦେବୁ। ବ୍ୟାଘ୍ର ସର୍ବଦା ଶିକାର କରି… ନିମିତ୍ତ ଭ୍ରମଣ କରୁଥିବାରୁ ସମସ୍ତେ ତାହାକୁ ଭୟ କରନ୍ତି।… ଚନ୍ଦ୍ର ବିଦାୟ ପାଇଁ ଆପଣା ଶିକ୍ଷକଙ୍କୁ ପ୍ରାର୍ଥନା କଲା; ମାତ୍ର… ତାହାର ବିଦାୟ ମଞ୍ଜୁର କଲେ ନାହିଁ। କୁକୁରମାନେ ବାଳ… ମାନଙ୍କୁ କାମୁଡ଼ିବାରୁ ସେମାନେ ସେମାନଙ୍କୁ ପ୍ରହାର କଲେ।… ବ୍ୟକ୍ତି ଥରକୁଥର ଚୋରୀ କରିବାରୁ ବିଚାରପତି ତାହାକୁ କାରା… ଆଦେଶ ଦେଲେ। ଗୋପାଳ ଅତ୍ୟନ୍ତ ସାନ, ଏହି କାରଣରୁ… ପରିଶ୍ରମ କରି ପାରେ ନାହିଁ।

ଶୂନ୍ୟ ସ୍ଥାନରେ ସର୍ବନାମ ଶବ୍ଦ ଯୋଗ କର।

ବିରାଡ଼ି ମାଛ ଖାଇବାରୁ ବାଳକମାନେ—ତାହାକୁ ଦୂର… ଦେଲେ। ରାମ ଅନୁପସ୍ଥିତ ହେବାରୁ ଶିକ୍ଷକ—ଦଣ୍ଡ ଦେ… ଗୋବିନ୍ଦର ବୟସ ଅତି ଅଳ୍ପ ଥିବାରୁ—ନାମ ବହିରେ… ଯାଇ ନ ପାରେ। ଇନ୍‌ସ୍ପେକ୍ଟର ସାହେବ ଶିକ୍ଷକଙ୍କୁ କହିଲେ… ସ୍କୁଲକୁ ସୁରକ୍ଷିତ ରଖିଥାଅ। ଆଜି—ପରିଦର୍ଶନ କରିବୁ… ଈଶ୍ୱର ପ୍ରାଣୀମାନଙ୍କୁ ପ୍ରତିପାଳନ କରୁଥିବାରୁ—ପ୍ରତ୍ୟହ—ପ୍ରା…



…ବା ଉଚିତ। ବିଦ୍ୟା ମନୁଷ୍ୟର ପ୍ରଧାନ ଭୂଷଣ, ଏଣୁକରି— …ନା—ଜୀବନ ବୃଥା ଅଟେ।

---

## ବିଶେଷଣ।

୧। ଯେଉଁ ଶବ୍ଦ ବିଶେଷ୍ୟ ପଦର ଗୁଣ ପ୍ରକାଶ କରେ ତାହାକୁ ବିଶେଷଣ କହନ୍ତି। ଯଥା, ଉତ୍ତମ ବାଳକ, ପରିଷ୍କାର ଆକାଶ, ଅନାଥା କନ୍ୟା, ଏଠାରେ ଉତ୍ତମ ବାଳକର, ପରିଷ୍କାର ଆକାଶର ଏବଂ ଅନାଥା କନ୍ୟା ପଦକୁ ବିଶେଷ କରିବାରୁ ବିଶେଷଣ ହେଲା।

ଶୁଷ୍କ ତୃଣ—ଏଠାରେ ଶୁଷ୍କ ବିଶେଷଣ—କାରଣ ତୃଣ ପଦକୁ ବିଶେଷ କରୁଅଛି।

ଶ୍ୱେତ ବସ୍ତ୍ର—ବିଶେଷଣ ଶ୍ୱେତ—କାରଣ ବସ୍ତ୍ର ପଦକୁ ବିଶେଷ କରୁଅଛି।

କଳା ଗାଈ—ବିଶେଷଣ କଳା—କାରଣ ଗାଈ ପଦକୁ ବିଶେଷ କରୁଅଛି।

ସୁନ୍ଦରୀ ବାଳିକା—ବିଶେଷଣ ସୁନ୍ଦରୀ—କାରଣ ବାଳିକା ପଦକୁ ବିଶେଷ କରୁଅଛି।

କୁଳୀନ ବ୍ୟକ୍ତି—ବିଶେଷଣ କୁଳୀନ—କାରଣ ବ୍ୟକ୍ତି ପଦକୁ ବିଶେଷ କରୁଅଛି।

ବିଶେଷଣ—ମଧୁର, କ୍ଷୁଦ୍ର, ପବିତ୍ର, ଘନ, ଧନୀ, ଦରିଦ୍ର, ଦୟାଳୁ, …ପି, କଠିନ, ଗ୍ରାମ୍ୟ, କୃଷ୍ଣ, ପୀତ, ଅମ୍ଳ, ନୀଚ, ଶୁଷ୍କ, ବୃହତ, ମୂର୍ଖ, ବିଦ୍ୱାନ୍, ଆର୍ଦ୍ର, ଗତ, ଶୀତ, ତୃଷ୍ଣାର୍ତ୍ତ, ପଞ୍ଚମ, [illegible]

ପ୍ରଶ୍ନ।

…ଶେଷଣର ସୂତ୍ର କହି ପାଞ୍ଚଗୋଟି ଉଦାହରଣ ଦିଅ।

…ଲିଖିତ ବାକ୍ୟସମୂହର ଶୂନ୍ୟସ୍ଥାନରେ ବିଶେଷଣ ଲଗାଅ।

ନଦୀରେ—ଜଳ ବହୁଅଛି । ଅଶ୍ୱ—ଜନ୍ତୁ ଅଟେ । ବରଫ—
ଅଟେ । ଭୂମିର ପୁତ୍ର ଛବି ଲେଖିବାରେ—ଅଛନ୍ତି । ଗାଈମାନେ
କ୍ଷେତ୍ରରେ—ଘାସ ଖାଉଅଛନ୍ତି । ବ୍ୟାଘ୍ର ଏକ—ପଶୁ ଅଟେ, ଏବଂ
କଷ୍ଟ ଲୋକମାନେ ତାହାଙ୍କୁ ଭୟ କରନ୍ତି । —ଲୋକର ସର୍ବ
ଆଦର ହୁଏ । —ରାତ୍ରିରେ କିଛି ଦେଖା ଯାଏ ନାହିଁ । ସ୍କୁଲରେ କଲ
ପଠା ବିଶେଷ—ଅଟେ । ସେ ବିଦ୍ୟା ବିଷୟରେ—ଅର୍ଥ ପ୍ରଦାନ କରି
ଅଛନ୍ତି ।

ଅଧଃପ୍ରକଟିତ ବାକ୍ୟଗୁଡ଼ିକର ବିଶେଷଣ ବାହାର କର ତା
କେଉଁ ବିଶେଷ୍ୟର ଗୁଣ ପ୍ରକାଶ କରୁଅଛି କହ ।

ପରିଷ୍କାର ଆକାଶ ନୀଳବର୍ଣ୍ଣ ଅଟେ । ପୃଥିବୀର ଆକାର ଗୋଲ
ଛାତ୍ରମାନଙ୍କର ଆପଣା୨ ପାଠରେ ମନୋଯୋଗୀ ହେବା ଉଚିତ । ମ
ବ୍ୟକ୍ତିକୁ ସମସ୍ତେ ଘୃଣା କରନ୍ତି । ଦୁଷ୍ଟ ବ୍ୟକ୍ତିର ସଙ୍ଗ ନ କର । ଆ
ମାନଙ୍କର ପରିଶ୍ରମୀ ହେବା ଉଚିତ । କାର୍ପାସ ଉପଯୋଗୀ ଅଟେ । ସୂ
ତେଜୋମୟ ଅଟନ୍ତି । ଦଶଜଣ ବାଳକ ବିସ୍ତୃତ ମଇଦାନରେ ଦୌ
ଅଛନ୍ତି । ଏହି ଦୁଷ୍ଟ ବାଳକ ଉଚ୍ଚ ବୃକ୍ଷରେ ଚଢ଼ିବାକୁ ଚାଲେ
ଗଲା । ପକ୍ଷିମାନେ ଉଚ୍ଚ୨ ବୃକ୍ଷରେ ବସି ସୁଶ୍ରାବ୍ୟ ଗୀତ ଗାଉଅଛ
ଶୁକ୍ଳ ଭଲ୍ଲୁକମାନେ ଶୀତଳ ଉତ୍ତରମହାସମୁଦ୍ରରେ ବାସ କରି
କଲମ୍ବସ ନାମରେ ଜଣେ ପ୍ରସିଦ୍ଧ ବ୍ୟକ୍ତି ଆମେରିକା ଆବିଷ୍କାର କ
ଅଛନ୍ତି । ଗ୍ରୀଷ୍ମକାଳରେ ଦିବସ ବଡ଼ ଓ ରାତ୍ରି ସାନ ହୁଏ ।

---

## କ୍ରିୟା ।

୧୩ । ଯାହାଦ୍ୱାରା କିଛି ହେବା, କରିବା ଇତ୍ୟାଦି ଅର୍ଥ ବୁଝାଏ
ତାହାକୁ କ୍ରିୟା ବୋଲନ୍ତି । ଯଥା, ଅଶ୍ୱ ଦୌଡ଼ୁଅଛି;
ବସିଥିଲା; ସେ ପୀଡ଼ିତଅଛି; ଏଠାରେ ଦୌଡ଼ୁଅଛି, ବସି-
ଓ ଅଛି କ୍ରିୟା ଅଟେ । କାରଣ ଏ ସବୁରୁ ଦୌଡ଼ିବା,
ଓ ଥିବା ଅର୍ଥ ବୋଧ ହେଉଅଛି ।



ବାଳକମାନେ ଗ୍ରାମରୁ ଆସୁଅଛନ୍ତି—କ୍ରିୟା ଆସୁଅଛନ୍ତି—
କାରଣ ଏଥିରୁ ଆସିବା ଅର୍ଥ ବୋଧ ହେଉଅଛି ।

ପୁତ୍ର ପିତାଙ୍କ ନିକଟକୁ ପତ୍ର ଲେଖିବ—କ୍ରିୟା ଲେଖିବ—କାରଣ
ଏଥିରୁ ଲେଖିବା ଅର୍ଥ ବୋଧ ହେଉଅଛି ।

ବୃକ୍ଷର ପତ୍ର ସାଗୁଆ ଅଟେ—କ୍ରିୟା ଅଟେ—କାରଣ ଏଥିରୁ
ହେବା ଅର୍ଥ ବୋଧ ହେଉଅଛି ।

ପରମେଶ୍ୱର ଏହି ବ୍ରହ୍ମାଣ୍ଡକୁ ସୃଷ୍ଟି କରିଅଛନ୍ତି—କ୍ରିୟା ସୃଷ୍ଟି କରି-
ଅଛନ୍ତି—କାରଣ ଏଥିରୁ ସୃଷ୍ଟି କରିବା ଅର୍ଥ ବୋଧ ହେଉଅଛି ।

ସିଂହ ଅରଣ୍ୟରେ ବାସ କରେ—କ୍ରିୟା ବାସ କରେ—କାରଣ
ଏଥିରୁ ବାସ କରିବା ଅର୍ଥ ବୋଧ ହେଉଅଛି ।

କ୍ରିୟା—ଯିବ, ନେଲା, ନେଉଅଛି, ଶୋଇବ, ଲେଖିଲା, ଶୁଣିବ,
ଚୁଅଛି, ପଚାରିଥିଲା, ଉଠିବ, ଟେଅ ହେଉଅଛି, ପଢ଼ିଅଛି, ପିଇବ,
ଇଲା ଇତ୍ୟାଦି ।

## ପ୍ରଶ୍ନ ।

କ୍ରିୟାର ଲକ୍ଷଣ କହି ପାଞ୍ଚଗୋଟି ଉଦାହରଣ ଦିଅ ।

ନିମ୍ନଲିଖିତ ବାକ୍ୟସମୂହର ଶୂନ୍ୟସ୍ଥାନରେ କ୍ରିୟା ଯୋଗ କର ।

ପକ୍ଷୀମାନେ— । ଅଶ୍ୱ— । ବାଳକମାନେ ମୋତେ— । ସେ-
ନେ ନଦୀରୁ ଜଳ— । ହଂସମାନେ ଜଳରେ— । ବାଳକ
ମାନେ— । ସେ ପଠାରେ— । ବୃକ୍ଷରୁ ପତ୍ର— । ରାମ ଦୁଷ୍ଟ— ।
ଗ୍ରୀଷ୍ମକାଳରେ ଆମ୍ବ ପରିପକ୍ୱ— । ପେଚା ରାତ୍ରିରେ— । ଶିକ୍ଷକ
ମାନଙ୍କୁ— । ବାଳକମାନେ ବିଦ୍ୟାଳୟରେ— ।

ନିମ୍ନଲିଖିତ ବାକ୍ୟଗୁଡ଼ିକରୁ କ୍ରିୟା ବାହାର କରି କ୍ରିୟା ହେବାର
କହ । ହଂସମାନେ ଜଳରେ ପହଁରୁଅଛନ୍ତି । ଗାଈମାନେ
ମାନଙ୍କ ପକ୍ଷରେ ବ୍ୟବହାର୍ଯ୍ୟ ପଶୁ ଅଟନ୍ତି । ଆମ୍ଭେ ପ୍ରତ୍ୟହ
କୁ ଯାଉଁ । ସେମାନେ ଗ୍ରାମରେ ବାସ କରନ୍ତି । ବ୍ୟାଧ ଅରଣ୍ୟ-

ରେ ଗୋଟିଏ ବ୍ୟାଘ୍ରକୁ ବଧ କଲା । କୃଷକମାନେ ଆପଣା ୨ କ୍ଷେତ୍ର ଚଷୁଅଛନ୍ତି । ସେ ମୋର ନାମରେ ନାଲିଶ କଲା । ପ୍ରଜାମାନେ ରାଜାଙ୍କ ପ୍ରତି ଅସନ୍ତୁଷ୍ଟ ହେଲେ । ପଛାରେ ଦଣ୍ଡାୟମାନ ହୁଅ । ଆମ୍ଭେମାନେ ପୁରାତନ ପାଠ ପଢ଼ୁଅଛୁଁ । ହସ୍ତୀ ଏକ ବୃହତ୍ ଜନ୍ତୁ । ଅନେକ ନଦୀ ପର୍ବତରୁ ଜାତ ହୋଇ ସମୁଦ୍ରରେ ପତିତ ହୁଏ । ଏହି କଲମ କାହିଁ ଦିଅ । ଧାତୁ ଖଣିରୁ ପ୍ରାପ୍ତ ହୁଏ । ଓଡ଼ିଆମାନେ ମହିଷ ଅଛନ୍ତି



## ଅବ୍ୟୟ ।

୧୪ । ବିଶେଷ୍ୟ, ସର୍ବନାମ, ବିଶେଷଣ, ଓ କ୍ରିୟା ବ୍ୟତୀତ ସମୁଦାୟ ପଦକୁ ଅବ୍ୟୟ କହନ୍ତି । ଯଥା, ଆଜ, ଏବଂ, ବରଂ, ବା, କିନ୍ତୁ, [illegible], ଯେତେବେଳେ, ତେତେବେଳେ ଇତ୍ୟାଦି ।

ଅବ୍ୟୟ ମଧ୍ୟରେ କ୍ରିୟାବିଶେଷଣ, ଯୌଗିକ, ବିଭକ୍ତିସ୍ୱରୂପ ବା ପାର୍ଶ୍ୱବର୍ତ୍ତୀ ବିସ୍ମୟାଦି ସୂଚକ ଆଦି ଅବ୍ୟୟ ଅଛି ।

### କ୍ରିୟାବିଶେଷଣ ଅବ୍ୟୟ ।

୧୫ । ଯେଉଁ ଶବ୍ଦଦ୍ୱାରା କ୍ରିୟାପଦକୁ ବିଶେଷ କରାଯାଏ ତାହା କ୍ରିୟାବିଶେଷଣ । ଯଥା ସେ ଶୀଘ୍ର ଦୌଡ଼ୁଅଛି । ନଦୀ ବେଗରେ ପ୍ରବାହିତ ହେଉଅଛି । ଏଠାରେ ଶୀଘ୍ର ଓ ବେଗରେ କ୍ରିୟାବିଶେଷଣ । କାରଣ ଶୀଘ୍ର, ଦୌଡ଼ୁଅଛି କ୍ରିୟାକୁ ଓ ବେଗରେ ପ୍ରବାହିତ ହେଉଅଛି କ୍ରିୟାକୁ ବିଶେଷ କରୁଅଛି ।

୧ । ରାମ ଧୀରେ ୨ ଆସୁଅଛି—କ୍ରିୟାବିଶେଷଣ ଧୀରେ ୨ କାରଣ ଆସୁଅଛି କ୍ରିୟାକୁ ବିଶେଷ କରୁଅଛି ।

୨ । ସେ ଉତ୍ତମରୂପେ ଲେଖୁଅଛି—କ୍ରିୟାବିଶେଷଣ ଉତ୍ତମରୂପେ—କାରଣ ଲେଖୁଅଛି କ୍ରିୟାକୁ ବିଶେଷ କରୁଅଛି ।



୩ । ତୁମ୍ଭେ କେବେ ଆସିବ ? —କ୍ରିୟାବିଶେଷଣ କେବେ— ଏହାଦ୍ୱାରା ଆସିବ କ୍ରିୟାକୁ ବିଶେଷ କରାଯାଉଅଛି ।

୪ । ଶିକ୍ଷକ ମୋତେ ମନୋଯୋଗପୂର୍ବକ ପଢ଼ାଉଅଛନ୍ତି—କ୍ରିୟାବିଶେଷଣ ମନୋଯୋଗପୂର୍ବକ — କାରଣ ପଢ଼ାଉଅଛନ୍ତି କ୍ରିୟାକୁ ବିଶେଷ କରୁଅଛି ।

୫ । ଆମ୍ଭେମାନେ ଯେହି ସ୍କୁଲକୁ ଯାଉଁ —କ୍ରିୟାବିଶେଷଣ —କାରଣ ଯାଉଁ କ୍ରିୟାପଦକୁ ବିଶେଷ କରୁଅଛି ।

କ୍ରିୟାବିଶେଷଣ—ଏବେ, ତେତେବେଳେ, କେବେ, କ୍ରମେ, ଶୀଘ୍ର, ଧୀରେ, ଏଠାରେ, ସେଠାରେ, ଅତିଶୟ, ଦୈବାତ୍, [illegible], ବାସ୍ତବିକ, କଦାଚିତ୍, [illegible], ସ୍ୱୟଂ, ବାରମ୍ବାର, କ୍ରମେ ୨, ଅତ୍ୟନ୍ତ, ପୁଣି, ଇତ୍ୟାଦି ।

### ପ୍ରଶ୍ନ ।

କ୍ରିୟାବିଶେଷଣ କାହାକୁ କହନ୍ତି ? ଗୋଟିଏ ଉଦାହରଣ ଦିଅ ।

ନିମ୍ନଲିଖିତ ଶୂନ୍ୟସ୍ଥାନରେ କ୍ରିୟାବିଶେଷଣ ଲଗାଇ ବାକ୍ୟ ପୂରଣ କର ।

ବାଳକ ଗ୍ରାମରୁ—ଆସିଲା । ତୁମ୍ଭେ—ଆସିବ ? ଗୋପାଳ—ନଦୀ ସ୍ରୋତରୁ ଦଣ୍ଡ ପାଇଲା । ଗୋବିନ୍ଦର ପୁତ୍ର—ଛବି ଲେଖିପାରେ । ସେମାନେ ପର୍ବତ ଉପରକୁ—ଚଢ଼ି ପାରନ୍ତି ନାହିଁ । ସେମାନେ— ବ୍ୟାଖ୍ୟା ଦେବାରୁ ପୁରସ୍କାର ପାଇଲେ । ରାଜା—ପ୍ରଜାପାଳନ କରୁଥିବାରୁ ସମସ୍ତେ ତାହାଙ୍କ ପ୍ରତି ଅସନ୍ତୁଷ୍ଟ ଅଛନ୍ତି । ଆମ୍ଭେ—ଏହି ବ୍ୟାକରଣ ଖଣ୍ଡିକୁ ରଚନା କରୁଅଛୁଁ । ବ୍ୟାଘ୍ର—ଗର୍ଜ୍ଜନ କଲା —ସ୍କୁଲକୁ ଯାଏ ।

ନିମ୍ନଲିଖିତ ବାକ୍ୟଗୁଡ଼ିକ ମଧ୍ୟରେ କେଉଁଟା କ୍ରିୟାବିଶେଷଣ କହ ।

ଅଶ୍ୱ ଶାଳରୁ ହଠାତ୍ ପଳାଇଲା । ସେମାନେ ମୋତେ ବୃଥାରେ

ଅପମାନ କଲେ । ତୁମ୍ଭର ସର୍ବଦା ପାଠ ପ୍ରସ୍ତୁତ କରିବା … ବିରାଜି ତାଙ୍କ ଉପରକୁ ଶୀଘ୍ର ଚଢିଗଲା । ତୁମ୍ଭେମାନେ ଅ… ସୂର୍ଯ୍ୟଙ୍କ ଚିଠୀ ଲେଖିଲ । ଏହି ରାଜା ନ୍ୟାୟରୂପେ … କରନ୍ତି । ସେହି ବାଳକ ସର୍ବଦା ବିଳମ୍ବରେ ଆସେ । … ଉଚିତ । ସେମାନେ ନିର୍ଭୟରେ ଯୁଦ୍ଧ କଲେ । ମୁଁ ନିୟମିତ … ସ୍କୁଲରେ ଉପସ୍ଥିତ ହୁଏଁ । ସେ ତତ୍‌କ୍ଷଣାତ୍ ପ୍ରାଣତ୍ୟାଗ କଲା … ଅନାୟାସରେ ପାଇ ପାରିବ । କ୍ରମେ୨ ସୂର୍ଯ୍ୟଙ୍କ କିରଣ ପ୍ରକାଶ ପା… ଲାଗିଲା । ସେ ସ୍କୁଲକୁ ବିଳମ୍ବରେ ଆସିଲା ।

---

## ସଂଯୋଜକ ଅବ୍ୟୟ ।

୧୬ । ଯେଉଁ ଶବ୍ଦ ଦୁଇପଦ ବା ବାକ୍ୟକୁ ଯୋଗ ବା ବିଯୋଗ କରେ ତାହାକୁ ସଂଯୋଜକ କହନ୍ତି । ଯଥା, ରାମ ଏବଂ ଗୋପାଳ ପାଠ ପଢୁଅଛନ୍ତି । ଏଠାରେ ଏବଂ ସଂଯୋଜକ, କାରଣ … ଏବଂ ଗୋପାଳ ଏ ଦୁଇ ଶବ୍ଦକୁ ଯୋଗ କରୁଅଛି ।

୧ । ବାଳକ ଓ ବାଳିକାମାନଙ୍କର ପାଠ ପଢିବା ଉଚିତ — ଓ ସଂଯୋଜକ ଓ— କାରଣ ବାଳକ, ବାଳିକାମାନଙ୍କୁ ଯୋଗ କରୁ…

୨ । ନଦୀ ପର୍ବତ ବା ହ୍ରଦରୁ ନିର୍ଗତ ହୁଏ — ସଂଯୋଜକ … — କାରଣ ପର୍ବତ ହ୍ରଦକୁ ବିଯୋଗ କରୁଅଛି ।

୩ । ରାମ ଅନ୍ନ ଖାଇଲା ଅଉ ଜଳ ପିଇଲା — ସଂଯୋଜକାଗ କର । —କାରଣ ରାମ ଅନ୍ନ ଖାଇଲା, ଜଳ ପିଇଲା ଏହି … ବାକ୍ୟକୁ ଯୋଗ କରୁଅଛି ।

୪ । ରାମ ଅବା ଗୋବିନ୍ଦ ଯାଉ — ସଂଯୋଜକ ଅବା — କାରଣ ରାମ ଗୋବିନ୍ଦ ଦୁଇ ପଦକୁ ବିଯୋଗ କରୁଅଛି ।

୫ । ସେ ଦୋକାନକୁ ଗଲା ଏବଂ କାଗଜ ଆଣିଲା — ସଂ…



…ଏବଂ — କାରଣ ସେ ଦୋକାନକୁ ଗଲା, ସେଠାରୁ କାଗଜ ଆଣିଲା ଏହି ଦୁଇ ବାକ୍ୟକୁ ଯୋଗ କରୁଅଛି ।

ସଂଯୋଜକ — ଅଉ, ଏବଂ, ପୁଣି, ଓ, ମଧ୍ୟ, ବରଂ, କିମ୍ବା, ଅବା, …ବା, ନତୁବା, ମାତ୍ର, କାରଣ, ସକାଶେ, ଅତଏବ, ଅଥଚ, ଯେବେ, ତେବେ, ଯଦ୍ୟପି, ବରଞ୍ଚ, ନିରନ୍ତର, ଯଥା, ତଥା,

## ପ୍ରଶ୍ନ ।

…ପ୍ରକଟିତ ବାକ୍ୟ ସବୁରେ ଥିବା ସଂଯୋଜକ ଶବ୍ଦ ବାହାର … କି କାର୍ଯ୍ୟ କରୁଅଛି କହ ।

… ଦରିଦ୍ରମାନଙ୍କୁ ଅନ୍ନ ଓ ବସ୍ତ୍ର ଦେଲୁଁ । ସେ ଗୋଟିଏ …ରିଣୀ ଓ କୂପ ଖନନ କରିବାର ମାନସ ରଖିଅଛନ୍ତି । ରାଜା …ଙ୍କୁ ଡକାଇଲେ, ମାତ୍ର କଥା କହିଲେ ନାହିଁ । ଯେବେ ଆପଣ …ଦଣ କରନ୍ତି ତେବେ ଆମ୍ଭେ ଏହିକ୍ଷଣି ବାହାର ଯିବୁଁ । ଆମ୍ଭର … ଏହି କ ତୁମ୍ଭେ ପରିଶ୍ରମ କର ନତୁବା ପରୀକ୍ଷୋତ୍ତୀର୍ଣ୍ଣ ହୁଅ । ରାମ … ଗୋବିନ୍ଦ ଆସୁ । ଯଦ୍ୟପି ଏ ଦେଶରେ ରଘୁନାଥ ଧନବାନ୍ …ପି କୃଷ୍ଣର ନାମ ସୁପ୍ରସିଦ୍ଧ । ବାଳକ ପ୍ରତ୍ୟହ ପଢିବାକୁ ଆସେ, …ସେ ଅପୂର୍ଣ୍ଣା ସନ୍ତ୍ର ପ୍ରସ୍ତୁତ କରେ ନାହିଁ ।

…ନିମ୍ନଲିଖିତ ବାକ୍ୟସମୂହର ଶୂନ୍ୟ ସ୍ଥାନରେ ସଂଯୋଜକ ଶବ୍ଦ …

ପିତା — ପୁତ୍ର ଗ୍ରାମକୁ ଆସୁଅଛନ୍ତି । ବର୍ଷା କାଳରେ ନଦୀ— …ରିଣୀ ସବୁ ଜଳରେ ପରିପୂର୍ଣ୍ଣ ହୋଇଥାଏ । ଛାତ୍ରମାନେ ଦୋକା… କଲମ — ଦୁଆତ ଆଣିଅଛନ୍ତି । ତୁମ୍ଭେ ଯିବ — ଆମ୍ଭେ …ବୁଁ । ସେ ମୋତେ ଡାକିଲା — କଥା କହିଲା ନାହିଁ । ବିଦ୍ୟାର୍ଥି-…ଙ୍କୁ ବ୍ୟାକରଣ — ଭାବାର୍ଥରେ ବିଶେଷ ଯତ୍ନ କରିବା ବିଧେୟ ।

ତୁମ୍ଭେ ଆମ୍ଭ ସମୀପକୁ ଲେଖିଲ—ଆମ୍ଭେ ଆସିଲୁଁ । ବସନ୍ତ କା
ବୃକ୍ଷ—ଲତାରେ ନବପଲ୍ଲବ—କୁସୁମ ଜାତ ହୁଏ । ତୁମ୍ଭେ ପ୍ରଭା
ସ୍କୁଲକୁ ଆସିବ— ଆମ୍ଭେ ତୁମ୍ଭଙ୍କୁ ପୁରୀସ୍କୃତ କରି ଦେବୁଁ ।
ରାଜା ଦଶରଥଙ୍କର ଗୃହବୋଢି ପୁତ୍ର—ଏକ କନ୍ୟା ଥିଲେ ।

---

ବିଭକ୍ତିସ୍ୱରୂପ ବା ପାର୍ଶ୍ୱବର୍ତ୍ତୀ ଅବ୍ୟୟ ।

୧୭ । ଯେଉଁ ଅବ୍ୟୟ ସଂଜ୍ଞା ବା ସର୍ବନାମର ପରେ ରହି ବିଭ କାର୍ଯ୍ୟ କରେ ବା ଯେଉଁ ଅବ୍ୟୟକୁ ଶବ୍ଦଦ୍ୱୟର ପରସ୍ ସମ୍ପର୍କ ଜଣା ଯାଏ ତାହାକୁ ବିଭକ୍ତିସ୍ୱରୂପ ବା ପାର୍ଶ୍ୱବ କହନ୍ତି । ଯଥା, ସେ ଆମ୍ଭ ସଙ୍ଗରେ ଆସିଲା । ଏଠାରେ ସଙ୍ଗରେ ପାର୍ଶ୍ୱବର୍ତ୍ତୀ, କାରଣ ସେ ଓ ଆମ୍ଭର ସମ୍ପର୍କ ପ୍ରକା କରୁଅଛି ବା ଆମ୍ଭ ସଙ୍ଗରେ ତୃତୀୟା ବିଭକ୍ତି ବୋଲି ଅନ୍ୱ କଲେ ମଧ୍ୟ ଉତ୍ତମ ।

୧ । ପୁସ୍ତକ ଟେବୁଲ ଉପରେ ଅଛି—ପାର୍ଶ୍ୱବର୍ତ୍ତୀ ଉପରେ—କାରଣ ପୁସ୍ତକ ଓ ଟେବୁଲର ସମ୍ପର୍କକୁ ପ୍ରକାଶ କରୁଅଛି ବା ଉପରେ ଅଧିକରଣ କାରକ କହିଲେ ସୁଦ୍ଧା ଉତ୍ତମ ।

୨ । ଅଶ୍ୱ ବୃକ୍ଷ ତଳରେ ଶୟନ କରିଅଛି—ପାର୍ଶ୍ୱବର୍ତ୍ତୀ ତ —କାରଣ ଅଶ୍ୱ ଓ ବୃକ୍ଷର ସମ୍ପର୍କ ପ୍ରକାଶ କରୁଅଛି ବା ତଳରେ ଅଧିକରଣ କାରକ ବୋଲିଲେ ଉତ୍ତମ ।

୩ । ତୁମ୍ଭ ଭାଇ ଆମ୍ଭ ସଦୃଶ ଅଟନ୍ତି—ପାର୍ଶ୍ୱବର୍ତ୍ତୀ ସଦୃଶ—କା ଭାଇ ଓ ଆମ୍ଭର ସମ୍ପର୍କ ପ୍ରକାଶ କରୁଅଛି ।

୪ । ଅପରାଧୀମାନେ ବିଚାରପତିଙ୍କ ସମ୍ମୁଖରେ ଦଣ୍ଡାୟମାନ ହେ —ପାର୍ଶ୍ୱବର୍ତ୍ତୀ ସମ୍ମୁଖରେ—କାରଣ ଅପରାଧୀମାନେ ଓ ବିଚାରପତି



ର୍କ ପ୍ରକାଶ କରୁଅଛି, ବା ବିଚାରପତିଙ୍କ ସମ୍ମୁଖରେ ଅଧିକରଣ ରକ ବୋଲିଲେ ଉତ୍ତମ ।

। ଆମ୍ଭେମାନେ ଅନ୍ନ ବ୍ୟତିରେକେ ବଞ୍ଚି ନ ପାରୁଁ—ପାର୍ଶ୍ୱ- ର୍ତ୍ତୀ ବ୍ୟତିରେକେ—କାରଣ ଆମ୍ଭେମାନେ ଓ ଅନ୍ନର ସମ୍ପର୍କ ପ୍ରକାଶ ରୁଅଛି ବା ଅଧିକରଣ ବୋଲିଲେ ଉତ୍ତମ ।

ପାର୍ଶ୍ୱବର୍ତ୍ତୀ ବା ବିଭକ୍ତିସ୍ୱରୂପ ଅବ୍ୟୟ ।

ତଳେ, ଉପରେ, ମଧ୍ୟରେ, ପଶ୍ଚାତ୍ ଭାଗରେ, ସମ୍ମୁଖରେ, ନିକ- , ଗୃହଅଡ଼ରେ, ପର୍ଯ୍ୟନ୍ତ, ଅଡ଼କୁ, ସହିତ, ନିମନ୍ତେ, ପରେ, ତିକୁ, ବ୍ୟତିରେକେ, ବ୍ୟତୀତ, ବିନା, ଅବଧି, ସଦୃଶ, ତୁଲ୍ୟ, ପେକ୍ଷା ଇତ୍ୟାଦି ।

ପ୍ରଶ୍ନ ।

ପାର୍ଶ୍ୱବର୍ତ୍ତୀ କାହାକୁ ବୋଲନ୍ତି ? ଏହାର ଅନ୍ୟ ନାମ କି ? ତିନି ଟି ପାର୍ଶ୍ୱବର୍ତ୍ତୀ ଶବ୍ଦ କହ ।

ନିମ୍ନଲିଖିତ ବାକ୍ୟ ସମୁଦାୟର ଶୂନ୍ୟସ୍ଥାନରେ ପାର୍ଶ୍ୱବର୍ତ୍ତୀ ଯୋଗ କର ।

ଣ୍ଡିତମାନେ ପର୍ବତ— ଚଢ଼ି ଅଛନ୍ତି । ସେମାନେ ପର୍ବତ—ବାସ କରନ୍ତି । ବାୟୁ—ପ୍ରାଣ ଧାରଣ କରିବା ଦୁଃସାଧ୍ୟ ଅଟେ । ତାହାର ପଚିଶ୍—ଅଛି । ତୁମ୍ଭର ଜ୍ୟେଷ୍ଠପୁତ୍ର ସୋମବାରରୁ ବୁଧବାର ପୀଡ଼ିତ ଥିଲା । ଶ୍ରୀରାମଚନ୍ଦ୍ର ସୀତା—ବନକୁ ଯାଇଥିଲେ । ଶ୍ରୀ- ହରି ରାମ ଆମ୍ଭ—ଅଛି । ଅଶ୍ୱ—ଘାସ ନାହିଁ । ଗୋବିନ୍ଦ ମୋର ଠିତ ପୁସ୍ତକକୁ ପଠ—ରଖିଅଛି । ଚୋରମାନେ ବିଚାରପତିଙ୍କ— ମାନ ହୋଇଅଛନ୍ତି । ଏହି ପଥର ଏକ ବଟ ବୃକ୍ଷ—ରହିନ ଥିଲା ।

ତଳଲିଖିତ ବାକ୍ୟସମୂହର ପାର୍ଶ୍ୱବର୍ତ୍ତୀ କହ ।

ରାଜା ବୃକ୍ଷ ତଳରେ ଉପବେଶନ କରିଅଛନ୍ତି । ତାହାର କଲମ

ଟେବୁଲ ଉପରେ ଅଛି । ଏହି ମହାତ୍ମା ପର୍ବତ ଉପରେ ଗୋଟିଏ ମନୋହର ମନ୍ଦିର ପ୍ରସ୍ତୁତ କରୁଅଛନ୍ତି । ରାମ ଗୋପାଳ ସଙ୍ଗରେ ବଜାରରୁ ଆସୁଅଛି । ବାଳକମାନେ ତଟ ନିକଟରେ ଖେଳୁଥିଲେ । ମର୍କଟମାନେ ବୃକ୍ଷ ଉପରକୁ ଆରୋହଣ କରୁଅଛନ୍ତି । ବାଳିକାମାନେ ପର୍ବତ ତଳରେ ବୁଲୁଥିଲେ । ଉଷ୍ଟ୍ର ମରୁଭୂମିରେ ଜଳ ବ୍ୟତିରେକେ ଅନେକ ଦିନ ଯାଇ ପାରେ । ଆମ୍ଭେମାନେ ଆଗାମୀ ଶୁକ୍ରବାର ପର୍ଯ୍ୟନ୍ତ ବିଦାୟ ନେଉଅଛୁଁ ।

---

## ବିସ୍ମୟାଦିଦ୍ୟୋତକ ଅବ୍ୟୟ ।

୧୮ । ଯେଉଁ ଅବ୍ୟୟଦ୍ୱାରା ବିସ୍ମୟ, ଖେଦ ବା ବିରକ୍ତି ଜଣାଯାଏ ତାହାକୁ ବିସ୍ମୟାଦିଦ୍ୟୋତକ ଅବ୍ୟୟ କହନ୍ତି । ଯଥା, ହାୟ ! ଆମ୍ଭର କି ଦୁର୍ଘଟନା ହେଲା; ଏଠାରେ ହାୟ ବିସ୍ମୟାଦିଦ୍ୟୋତକ ଅବ୍ୟୟ—କାରଣ ଏହା ଖେଦ ପ୍ରକାଶ କରୁଅଛି ।

୧ । ଛିଃ, ତାହା ପକାଇ ଦିଅ—ବିସ୍ମୟାଦିଦ୍ୟୋତକ ଅବ୍ୟୟ ଛିଃ—କାରଣ ବିରକ୍ତି ପ୍ରକାଶ କରୁଅଛି ।

୨ । ରାମଃ, ଏହା କିଏ କରୁଅଛି—ବିସ୍ମୟାଦିଦ୍ୟୋତକ ଅବ୍ୟୟ ରାମଃ,—କାରଣ ବିରକ୍ତି ପ୍ରକାଶ କରୁଅଛି ।

୩ । ଓହୋ, ଏହି କାର୍ଯ୍ୟ ତୁମ୍ଭେ କଲ—ବିସ୍ମୟାଦିଦ୍ୟୋତକ ଅବ୍ୟୟ ଓହୋ—କାରଣ ଆଶ୍ଚର୍ଯ୍ୟ ପ୍ରକାଶ କରୁଅଛି ।

୪ । ହଁ, ତୁ କାହାକୁ ଦେଖିଲୁ—ବିସ୍ମୟାଦିଦ୍ୟୋତକ ଅବ୍ୟୟ ହଁ—କାରଣ ଆଶ୍ଚର୍ଯ୍ୟ ପ୍ରକାଶ କରୁଅଛି ।

୫ । ଶିବଃ, ଏହି ଦୁଷ୍କାର୍ଯ୍ୟକୁ ସେ କଲା—ବିସ୍ମୟାଦିଦ୍ୟୋତକ ଅବ୍ୟୟ ଶିବଃ—କାରଣ ବିରକ୍ତି ପ୍ରକାଶ କରୁଅଛି ।

ବିସ୍ମୟାଦିସୂଚକ ଅବ୍ୟୟ—ଓଃ, ଓହୋ, ଇଃ, ଇହି, ଉଃ, ଅହା, ଇସ୍, ଯାଯା, ଛିଛି, ହା, ହାୟ, ରାମ୍, ଶିବ୍ ଇତ୍ୟାଦି ।

ପ୍ରଶ୍ନ ।

ବିସ୍ମୟାଦିସୂଚକ ଅବ୍ୟୟର ସୂତ୍ର କହି ପଞ୍ଚଗୋଟି ଉଦାହରଣ ଦିଅ ।

ନିମ୍ନଲିଖିତ ବାକ୍ୟସମୂହର ଶୂନ୍ୟସ୍ଥାନରେ ବିସ୍ମୟାଦିସୂଚକ ଅବ୍ୟୟ ଯୋଗ କର ।

——ଅମର କି ଆପଦ ପଡ଼ିଲା ।—ତୁମ୍ଭେ ଏହା କିପାଁଇ କଲ ? ——ତୁମ୍ଭେ ବଡ଼ ଅସାବଧାନରେ କାର୍ଯ୍ୟ କର ।——ସେ ଏହି କାର୍ଯ୍ୟ ନଷ୍ଟ କରି ଦେଲା ।——ସେତ ବଡ଼ ଦୁଷ୍ଟ ।——ପଣ୍ଡିତ ହୋଇ ସେ ଏପରି କାର୍ଯ୍ୟ କଲେ ।——ଏହା ଆମ୍ଭ କପାଳର ଦୋଷ ।

ନିମ୍ନଲିଖିତ ବାକ୍ୟ ଗୁଡ଼ିକରୁ ବିସ୍ମୟାଦିସୂଚକ ଅବ୍ୟୟ ବାହାର କର ।

ହାୟ ! ପରମେଶ୍ୱର ଆମ୍ଭଙ୍କୁ ବଡ଼ କଷ୍ଟ ଦେଲେ । ଛିଃ, ତୁମ୍ଭର ଏପରି ଅସାବଧାନ ହେବା ଅନୁଚିତ । ମମ, ତୁମ୍ଭେ ଅମର ପୁସ୍ତକ ଚୋରୀ କରି ନେଲ । ଛିଃ, ସେହି ପଦାର୍ଥକୁ ତଳେ ପକାଇ ଦିଅ । ରାମ୍, ତୁମ୍ଭେ ଅକାରଣରେ ତାହାକୁ ଦଣ୍ଡ ଦେଲ । ଓହୋ, କାହିଁ-ପାଇଁ ତୁମ୍ଭେ ଏ କାର୍ଯ୍ୟ କଲ ?

---

ଶବ୍ଦଭେଦ କରିବା ଧାରା ।

କ୍ଷୁଦ୍ର ବାଳକ ଓ ବାଳିକାମାନେ ପ୍ରତ୍ୟହ ବିଦ୍ୟାଳୟକୁ ଆସନ୍ତି, ଏଣୁ ଶିକ୍ଷକ ସେମାନଙ୍କ ପ୍ରତି ଅଧିକ ସନ୍ତୁଷ୍ଟ ଥାନ୍ତି ।

କ୍ଷୁଦ୍ର—ବିଶେଷଣ—କାରଣ ବାଳକ ଓ ବାଳିକା ବିଶେଷ୍ୟ ପଦକୁ ବିଶେଷ କରୁଅଛି ।

ବାଳକ—ବିଶେଷ୍ୟ—କାରଣ ଏହା ଏକ ପ୍ରାଣୀର ନାମ ଅଟେ ।

ଓ—ସଂଯୋଜକ ଅବ୍ୟୟ—କାରଣ ବାଳକବାଳିକା ଉଭୟ ପଦକୁ ଯୋଗ କରୁଅଛି ।

ବାଳିକାମାନେ—ବିଶେଷ୍ୟ—କାରଣ ଏହା ଏକପ୍ରାଣୀର ନାମ ଅଟେ

ପ୍ରତିଦିନ—କ୍ରିୟାବିଶେଷଣ ଅବ୍ୟୟ— କାରଣ ଆସନ୍ତି କ୍ରିୟା ପଦକୁ ବିଶେଷ କରୁଅଛି ।

ବିଦ୍ୟାଳୟକୁ—ବିଶେଷ୍ୟ—କାରଣ ଏହା ଏକସ୍ଥାନର ନାମ ଅଟେ ।

ଆସନ୍ତି—କ୍ରିୟା—କାରଣ ଏଥିରୁ ଆସିବା ଅର୍ଥ ବୋଧ ହେଉଅଛି ।

ଏବଂ—ସଂଯୋଜକ ଅବ୍ୟୟ—କାରଣ ଏହା ଉଭୟ ବାକ୍ୟକୁ ଯୋଗ କରୁଅଛି ।

ଶିକ୍ଷକ—ବିଶେଷ୍ୟ—କାରଣ ଏହା ଏକ ପ୍ରାଣୀର ନାମ ଅଟେ ।

ସେମାନଙ୍କ—ସର୍ବନାମ—କାରଣ, ବାଳକବାଳିକାମାନଙ୍କ ବଦଳରେ ବସିଅଛି ।

ପ୍ରତି—ପୂର୍ବବର୍ତ୍ତୀ—କାରଣ, ଏହା ଶିକ୍ଷକ ଓ ସେମାନଙ୍କ ସମ୍ପର୍କ ପ୍ରକାଶ କରୁଅଛି ।

ଅଧିକ କ୍ରିୟାବିଶେଷଣ ଅବ୍ୟୟ—କାରଣ, ସନ୍ତୁଷ୍ଟ ଥାନ୍ତି କ୍ରିୟା ପଦକୁ ବିଶେଷ କରୁଅଛି ।

ସନ୍ତୁଷ୍ଟ ଥାନ୍ତି—କ୍ରିୟା—କାରଣ, ଏଥିରୁ ସନ୍ତୁଷ୍ଟ ଥିବା ଅର୍ଥ ପ୍ରକାଶ ହେଉଅଛି ।

ପ୍ରଶ୍ନ

ଉପରୋକ୍ତ ଧାରାନୁସାରେ ନିମ୍ନଲିଖିତ ବାକ୍ୟ ସବୁର ଶବ୍ଦଭେଦ କର ।

ବାଳକ ନଦୀକୁ ଗଲା, ଏବଂ ସେ ସେଠାରେ ବଡ଼ ମାଛ ଧରିଲା ।

ସେମାନେ ଅରଣ୍ୟରୁ କାଷ୍ଠ ଓ ପତ୍ର ଆଣୁଅଛନ୍ତି । ପକ୍ଷୀମାନେ ବୃକ୍ଷ ଉପରେ ବସି ଆନନ୍ଦରେ ଗୀତ ଗାନ କରୁଅଛନ୍ତି । ସୁଶୀଳ ଛାତ୍ରମାନେ ମନୋଯୋଗପୂର୍ବକ ଆପଣା ୨ ପାଠ ଅଭ୍ୟାସ କରୁଅଛନ୍ତି । ରାଜା ଓ ରାଣୀ ନଗରର ଚତୁର୍ଦ୍ଦିଗରେ ଭ୍ରମଣ କରୁଅଛନ୍ତି । କରୁଣାମୟ ପରମେଶ୍ୱର ଏହି ଅସୀମ ବ୍ରହ୍ମାଣ୍ଡକୁ ସୃଷ୍ଟି କରିଅଛନ୍ତି । ମୟୂରମାନେ ପର୍ବତଶୃଙ୍ଗରେ ଆନନ୍ଦରେ ନୃତ୍ୟ କରୁଅଛନ୍ତି । ଏହି ସୁଶୀଳ ବାଳକ ଆପଣା ପିତାଙ୍କ ନିକଟକୁ ଖଣ୍ଡେ ପତ୍ର ଲେଖିଅଛି । ବାୟୁ ବ୍ୟତିରେକ ପ୍ରାଣୀମାନେ କ୍ଷଣକାଳ ପ୍ରାଣଧାରଣ କରି ପାରନ୍ତି ନାହିଁ । ମହାବୀର ରାବଣ ଲଙ୍କାର ରାଜା ଥିଲେ । ଶ୍ରୀରାମଚନ୍ଦ୍ର ତାହାଙ୍କ ସଙ୍ଗରେ ଘୋରତର ଯୁଦ୍ଧ କରି ତାହାଙ୍କୁ ହତ କଲେ । ଅମ୍ଭେ ପରିଶ୍ରମ ସହକାରରେ ଏହି ରାମାୟଣ ଗ୍ରନ୍ଥକୁ ପ୍ରସ୍ତୁତ କରିଅଛୁଁ । ସମୁଦ୍ରରେ ନାନା ପ୍ରକାର ବିକଟ ଜଳଜନ୍ତୁ ବାସ କରନ୍ତି ।

---

## ବିଶେଷ୍ୟ ।

୧ । କୌଣସି ବ୍ୟକ୍ତି ସ୍ଥାନ ବା ପଦାର୍ଥର ନାମକୁ ବିଶେଷ୍ୟ କହନ୍ତି । ଯଥା; ମନୁଷ୍ୟ, ରାମ, ହିମାଳୟ, କଟକ, ସମୁଦ୍ର, ଧୈର୍ଯ୍ୟ, ପାଣ୍ଡିତ୍ୟ, ଗମନ ଇତ୍ୟାଦି ।

୨ । ବିଶେଷ୍ୟ—ପାଞ୍ଚପ୍ରକାର । ଯଥା; ଜାତିବାଚକ, ନାମବାଚକ, ଗୁଣବାଚକ, କ୍ରିୟାବାଚକ ଏବଂ ବସ୍ତୁବାଚକ ।

୩ । ଯେଉଁ ଶବ୍ଦଦ୍ୱାରା କୌଣସି ଜାତିର ବୋଧ ହୁଏ ତାହାକୁ ଜାତିବାଚକ ବିଶେଷ୍ୟ କହନ୍ତି । ଯଥା; ମନୁଷ୍ୟ, ବାଳକ, ଅଶ୍ୱ, କୀଟ, ମର୍କଟ, ଛାଗଳ ଇତ୍ୟାଦି ।

୪ । ଯହିଁରେ ଏକମାତ୍ର ବ୍ୟକ୍ତି, ବସ୍ତୁ ବା ସ୍ଥାନର ନିଜ ନାମ ବୋଧ ହୁଏ, ତାହାକୁ ନାମବାଚକ ବିଶେଷ୍ୟ କହନ୍ତି । ଯଥା; ରାମ, ଗୋପାଳ, କଟକ, ସମ୍ବଲପୁର, ମହାନଦୀ ଇତ୍ୟାଦି ।

୫ । ଯେଉଁ ଶବ୍ଦଦ୍ୱାରା କୌଣସି ଗୁଣ ବୋଧ ହୁଏ, ତାହାକୁ ଗୁଣବାଚକ ବିଶେଷ୍ୟ କହନ୍ତି । ଯଥା ; ପାଣ୍ଡିତ୍ୟ, ଲାଘବ, ଶୁକ୍ଳତା, କୃଷ୍ଣତା, ସୌନ୍ଦର୍ଯ୍ୟ, ମନୁଷ୍ୟତା, ଗୌରବ ଇତ୍ୟାଦି ।

୬ । ଯହିଁରୁ ଧାତୁର ଅର୍ଥମାତ୍ର ଜଣାଯାଏ, ସେ କ୍ରିୟାବାଚକ ବିଶେଷ୍ୟ । ଯଥା ; ଗମନ, ଚଳନ, ଦର୍ଶନ, କରିବା, ଧରିବା ଇତ୍ୟାଦି ।

୭ । ଏକ ୨ ବସ୍ତୁବୋଧକ ଶବ୍ଦକୁ ବସ୍ତୁବାଚକ ବିଶେଷ୍ୟ କହି । ଯଥା ; ଜଳ, ଅଗ୍ନି, ଆକାଶ, ପୃଥିବୀ, ପ୍ରସ୍ତର, ମୃତ୍ତିକା, କଷ୍ଟ ଇତ୍ୟାଦି ।

୮ । ଲିଙ୍ଗ, ବଚନ, ଓ କାରକଭେଦରେ ବିଶେଷ୍ୟର ରୂପାନ୍ତର ହୁଏ ।

ପ୍ରଶ୍ନ ।

ବିଶେଷ୍ୟ କେତେ ପ୍ରକାର ? ପ୍ରତ୍ୟେକର ନାମ କହ । କ୍ରିୟାବାଚକ ବିଶେଷ୍ୟର ସୂତ୍ର କହ । ବସ୍ତୁବାଚକ ବିଶେଷ୍ୟର ଲକ୍ଷଣ କହି ପାଞ୍ଚ ଗୋଟି ଉଦାହରଣ ଦିଅ । ଗୁଣବାଚକ ବିଶେଷ୍ୟ କାହାକୁ ବୋଲନ୍ତି ?

ନିମ୍ନଲିଖିତ ବିଶେଷ୍ୟମାନଙ୍କର ଜାତି କହ ।

ରାମଚନ୍ଦ୍ର । ସୌନ୍ଦର୍ଯ୍ୟ । ଲୌହ । ଗମନ । ପର୍ବତ । ପୁସ୍ତକ । ଦୃଢ଼ତା । କେଶବ । ସରଳତା । ହର । ପାଳନ । ଅର୍ଥ । ଉଷ୍ଣତା । ମହାନଦୀ । ଜଳ । ପାପ । ଦେବକୀ । ରାଜା । ଶୋଭା । ଦୟା । ନର୍ମ୍ମଦା । ହ୍ରଦ । ପରମେଶ୍ୱର । ପୁଷ୍କରିଣୀ । ଆକାଶ । ଭକ୍ଷଣ । ଲାଘବ ।

---

ଲିଙ୍ଗ ।

୯ । ଯେଉଁ ଚିହ୍ନରୁ ସ୍ତ୍ରୀ ପୁରୁଷର ପ୍ରଭେଦ ଜଣାଯାଏ ତାହାକୁ ଲିଙ୍ଗ ବୋଲାଯାଏ ।

୧୦ । ଲିଙ୍ଗ ତିନି ପ୍ରକାର ଅର୍ଥାତ୍ ପୁଂଲିଙ୍ଗ ସ୍ତ୍ରୀଲିଙ୍ଗ ଏବଂ କ୍ଳୀବଲିଙ୍ଗ । ମାତ୍ର ଓଡ଼ିଆ ଭାଷାରେ ପୁଂଲିଙ୍ଗ ଆଉ କ୍ଳୀବ ଲିଙ୍ଗର ଆକାରରେ

କିନ୍ତୁ ମାତ୍ର ପ୍ରଭେଦ ଲକ୍ଷିତ ହୁଏ ନାହିଁ । ଏଣୁ କ୍ଲୀବଲିଙ୍ଗକୁ ପୁଂଲିଙ୍ଗ ମଧ୍ୟରେ ଗଣନା କରା ଯାଇ ପାରେ ।

୧୧ । ଯେଉଁ ଶବ୍ଦରୁ ପୁରୁଷଜାତି ଜଣାଯାଏ ସେ ପୁଂଲିଙ୍ଗ । ଯଥା, ରାଜା, ପୁତ୍ର, ବାଳକ, ବ୍ୟାଘ୍ର, ଘୋଡ଼ା, ନର, ଯୁବା, ପିତା, ଭ୍ରାତା ଇତ୍ୟାଦି ।

୧୨ । ଯେଉଁ ଶବ୍ଦରୁ ସ୍ତ୍ରୀଜାତି ଜଣାଯାଏ ସେ ସ୍ତ୍ରୀଲିଙ୍ଗ । ଯଥା; ରାଣୀ, କନ୍ୟା, ବାଳିକା, ବ୍ୟାଘ୍ରୀ, ଘୋଡ଼ୀ, ନାରୀ, ଯୁବତୀ, ମାତା, ଭଗିନୀ ଇତ୍ୟାଦି ।

୧୩ । ଯେଉଁ ଶବ୍ଦରୁ ନିର୍ଜୀବ ପଦାର୍ଥର ନାମ ବୋଧ ହୁଏ ସେ କ୍ଲୀବଲିଙ୍ଗ । ଯଥା; ପର୍ବତ, ଗ୍ରାମ, ସ୍କୁଲ, କଲମ, କାଗଜ, ବେଞ୍ଚ, ପୁସ୍ତକ, ଛତା, ହୁଅଣ୍ଠ ଇତ୍ୟାଦି । କିନ୍ତୁ ଓଡ଼ିଆରେ ଏହା ପୁଲିଙ୍ଗରେ ଗଣ୍ୟ ହୁଏ ।

୧୪ । ପୁଂଲିଙ୍ଗ ଶବ୍ଦକୁ ସ୍ତ୍ରୀଲିଙ୍ଗ କରିବା ନିମନ୍ତେ ତିନୋଟି ଉପାୟ ଅଛି । ପ୍ରଥମ ଉପାୟ ଭିନ୍ନ ଶବ୍ଦର ପ୍ରୟୋଗଦ୍ୱାରା, ଦ୍ୱିତୀୟ ଉପାୟ ପଦର ଶେଷ ପରିବର୍ତ୍ତନଦ୍ୱାରା, ତୃତୀୟ ଉପାୟ ପୁଂଲିଙ୍ଗ ଶବ୍ଦ ପୂର୍ବରେ ମାଈ ଶବ୍ଦ ପ୍ରୟୋଗଦ୍ୱାରା ।

ପ୍ରଥମ ଉପାୟ ।

ଭିନ୍ନ ଶବ୍ଦଦ୍ୱାରା ।

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ପିତା | ମାତା | ରାଜା | ରାଣୀ |
| ଷଣ୍ଢ | ଗାଈ | ପୁଅ | ଝିଅ |
| ପୁତ୍ର | କନ୍ୟା | ପୁରୁଷ | ସ୍ତ୍ରୀ |
| ବର | ତରୁଣୀ | ଘୋଡ଼ା | ମହିଷୀ |
| ପତି | ପତ୍ନୀ | ଅଣ୍ଡା | ଅଣ୍ଡି |
| ସ୍ୱାମୀ | ଭାର୍ଯ୍ୟା | ବର | କନ୍ୟା |
| ଶୁକ | ଶାରୀ | କକା | ଖୁଡ଼ୀ |

## ଦ୍ୱିତୀୟ ଅଧ୍ୟାୟ ।

### ପଦର ଶେଷ ପରିବର୍ତ୍ତନରେ ।

୧ । ପୁଂଲିଙ୍ଗ ଶବ୍ଦକୁ ସ୍ତ୍ରୀଲିଙ୍ଗ କରିବାକୁ ହେଲେ, ଆ, ଈ, ଆଣୀ, ଯୁଣୀ, ଇଣୀ, ଓ ଅନୀ ପ୍ରତ୍ୟୟ ଯୋଗ କରିବାକୁ ହୁଏ, ତେତେବେଳେ ଶବ୍ଦର ଅନ୍ତ୍ୟସ୍ୱରର ଲୋପ ହୁଏ ।

| | | | |
|---|---|---|---|
| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
| ଶୂଦ୍ର | ଶୂଦ୍ରା | ବାଳକ | ବାଳିକା |
| ବୃଦ୍ଧ | ବୃଦ୍ଧା | ନାୟକ | ନାୟିକା |
| ଅଧମ | ଅଧମା | ପାଠକ | ପାଠିକା |
| କୃଶ | କୃଶା | ପରିଚାରକ | ପରିଚାରିକା |
| ଧୀର | ଧୀରା | ଗୌର | ଗୌରୀ |
| କୁମାର | କୁମାରୀ | ମନୋହର | ମନୋହାରିଣୀ |
| ସୁନ୍ଦର | ସୁନ୍ଦରୀ | ଶ୍ରୀମାନ୍ | ଶ୍ରୀମତୀ |
| ପିତାମହ | ପିତାମହୀ | ମିଥ୍ୟାବାଦୀ | ମିଥ୍ୟାବାଦିନୀ |
| ହିଂସ୍ର | ହିଂସ୍ରୀ | ଧନବାନ୍ | ଧନବତୀ |
| ବ୍ୟାଘ୍ର | ବ୍ୟାଘ୍ରୀ | ଇନ୍ଦ୍ର | ଇନ୍ଦ୍ରାଣୀ |
| ବ୍ରାହ୍ମଣ | ବ୍ରାହ୍ମଣୀ | ରୁଦ୍ର | ରୁଦ୍ରାଣୀ |
| ଘୋଡ଼ା | ଘୋଡ଼ୀ | ମାତୁଳ | ମାତୁଳାଣୀ |
| ଶଳା | ଶାଳୀ | ଚମାର | ଚମାରୁଣୀ |
| ନନା | ନନୀ | ବାଢ଼ି | ବାଢ଼ୁଣୀ |
| ଭେଡ଼ା | ଭେଡ଼ୀ | କୁମ୍ଭାର | କୁମ୍ଭାରୁଣୀ |
| ଟେଗା | ଟେଗୀ | ଗୌଡ଼ | ଗୌଡ଼ୁଣୀ |
| ଦାଣ୍ଡୁ | ଦାଣ୍ଡି | ତେଲି | ତେଲୁଣୀ |
| ଧାଙ୍ଗୁ | ଧାଙ୍ଗୀ | କେଉଟ | କେଉଟୁଣୀ |

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| କର୍ତ୍ତା | କର୍ତ୍ତ୍ରୀ | ତପା | ତପୁଣୀ |
| ଜନୟିତ୍ରୁ | ଜନୟିତ୍ରୀ | ପାଣ | ପାଣୁଣୀ |
| କାମୀ | କାମିନୀ | ଭଣ୍ଡାର | ଭଣ୍ଡାରୁଣୀ |
| ମେଧାବୀ | ମେଧାବିନୀ | ଭବ | ଭବାନୀ |
| | | ବରୁଣ | ବରୁଣାନୀ |
| ଅଧିକାରୀନ୍ | ଅଧିକାରିଣୀ | ମାତୁଳ | ମାତୁଳାନୀ |
| | | ଉପାଧ୍ୟାୟ | ଉପାଧ୍ୟାୟିନୀ |

ତୃତୀୟ ଉପାୟ ।

ପୁଂଲିଙ୍ଗ ଶବ୍ଦ ପୂର୍ବରେ ମାଈ ଯୋଗ କରବା ।

| | |
|---|---|
| ଅଣ୍ଡିରା ଘୋଡ଼ା | ମାଈ ଘୋଡ଼ା |
| ଅଣ୍ଡିରା ବାଘ | ମାଈ ବାଘ |
| ଅଣ୍ଡିରା ଛେଳି | ମାଈ ଛେଳି |

ନିମ୍ନଲିଖିତ ଶବ୍ଦଗୁଡ଼ିକ ସ୍ୱାଭାବିକ ସ୍ତ୍ରୀଲିଙ୍ଗ । ଏମାନଙ୍କର ପୁଂଲିଙ୍ଗ ନାହିଁ । ଯଥା; ବିଦ୍ୟୁତ୍, ରାତ୍ରି, ଲତା, ବୀଣା, ଦିକ୍, ପୃଥିବୀ, ତୃଷ୍ଣା, ନଦୀ, ଲଜ୍ଜା, ଶ୍ରେଣୀ, ଶୋଭା, ସେନା, ତିଥି, ବୁଦ୍ଧି, ଇଚ୍ଛା, ସମ୍ପଦ, ବିପଦ ଇତ୍ୟାଦି ।

ପ୍ରଶ୍ନ ।

ଲିଙ୍ଗ କାହାକୁ କହନ୍ତି ? ପୁଂଲିଙ୍ଗ ଓ ସ୍ତ୍ରୀଲିଙ୍ଗର ସଂଜ୍ଞା କହି କ୍ଲୀବ ଲିଙ୍ଗର ପାଞ୍ଚ ଗୋଟି ଉଦାହରଣ ଦିଅ । ପୁଂଲିଙ୍ଗ ଶବ୍ଦକୁ ସ୍ତ୍ରୀଲିଙ୍ଗ କରିବାର କେତେ ଗୋଟି ନିୟମ ଅଛି ? ପ୍ରତ୍ୟେକର ସୂତ୍ର କହି ଦୁଇ୨ ଗୋଟି ଉଦାହରଣ ଦିଅ ।

ନିମ୍ନଲିଖିତ ଶବ୍ଦସମୂହର ଲିଙ୍ଗ କହି ସେ ସବୁର ବିପରୀତ ଲିଙ୍ଗ କର ।

ବାଳିକା । ପିତା । ଗାଈ । ଶାଶୁ । ମୃଗ । ଗୌରୀ । ଦାସୀ ।

## ଦ୍ୱିତୀୟ ଉପାୟ ।

### ପଦର ଶେଷ ପରିବର୍ତ୍ତନରେ ।

୧୫ । ପୁଂଲିଙ୍ଗ ଶବ୍ଦକୁ ସ୍ତ୍ରୀଲିଙ୍ଗ କରିବାକୁ ହେଲେ, ଆ, ଈ, ଆଣୀ, ଯୁଣୀ, ଇଣୀ, ଓ ଅନ୍ୟ ପ୍ରତ୍ୟୟ ଯୋଗ କରିବାକୁ ହୁଏ, ତେତେବେଳେ ଶବ୍ଦର ଅନ୍ତ୍ୟସ୍ୱରର ଲୋପ ହୁଏ ।

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| ଶୂଦ୍ର | ଶୂଦ୍ରା | ବାଳକ | ବାଳିକା |
| ବୃଦ୍ଧ | ବୃଦ୍ଧା | ନାୟକ | ନାୟିକା |
| ଅଧମ | ଅଧମା | ପାଚକ | ପାଚିକା |
| କୃଶ | କୃଶା | ପରିଚାରକ | ପରିଚାରିକା |
| କ୍ଷୀଣ | କ୍ଷୀଣା | ଗୌର | ଗୌରୀ |
| କୁମାର | କୁମାରୀ | ମନୋହର | ମନୋହାରିଣୀ |
| ସୁନ୍ଦର | ସୁନ୍ଦରୀ | ଶ୍ରୀମାନ୍ | ଶ୍ରୀମତୀ |
| ପିତାମହ | ପିତାମହୀ | ମିଥ୍ୟାବାଦୀ | ମିଥ୍ୟାବାଦିନୀ |
| ସିଂହ | ସିଂହୀ | ଧନବାନ୍ | ଧନବତୀ |
| ବ୍ୟାଘ୍ର | ବ୍ୟାଘ୍ରୀ | ଇନ୍ଦ୍ର | ଇନ୍ଦ୍ରାଣୀ |
| ବ୍ରାହ୍ମଣ | ବ୍ରାହ୍ମଣୀ | ରୁଦ୍ର | ରୁଦ୍ରାଣୀ |
| ଘୋଡ଼ା | ଘୋଡ଼ୀ | ତାମ୍ବୁଲୀ | ତାମ୍ବୁଲୁଣୀ |
| ଖଞ୍ଜା | ଖଞ୍ଜୀ | ତନ୍ତୀ | ତନ୍ତୁଣୀ |
| କନ୍ଧା | କନ୍ଧୀ | ବାଘ | ବାଘୁଣୀ |
| ବୈରା | ବୈରୀ | କୁମ୍ଭାର | କୁମ୍ଭାରୁଣୀ |
| ଠେରା | ଠେରୀ | ଗୌଡ଼ | ଗୌଡୁଣୀ |
| ଦାନ୍ତୁ | ଦାନ୍ତୀ | ତେଲୀ | ତେଲୁଣୀ |
| ଧାନ୍ତୁ | ଧାନ୍ତୀ | କେଉଟ | କେଉଟୁଣୀ |

| ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ | ପୁଂଲିଙ୍ଗ | ସ୍ତ୍ରୀଲିଙ୍ଗ |
|---|---|---|---|
| କର୍ତ୍ତା | କର୍ତ୍ତ୍ରୀ | ଚଷା | ଚଷୁଣୀ |
| ଜନୟିତୃ | ଜନୟିତ୍ରୀ | ଘାଣ | ଘାଲୁଣୀ |
| କାମୀ | କାମିନୀ | ଭଣ୍ଡାର | ଭଣ୍ଡାରୁଣୀ |
| ମେଧାବୀ | ମେଧାବିନୀ | ଭବ | ଭବାନୀ |
| | | ବରୁଣ | ବରୁଣାନୀ |
| ଅଧିକାରୀନ୍ | ଅଧିକାରିଣୀ | ମାତୁଳ | ମାତୁଳାନୀ |
| | | ଉପାଧ୍ୟାୟ | ଉପାଧ୍ୟାୟିନୀ |

### ତୃତୀୟ ଉପାୟ ।

ପୁଂଲିଙ୍ଗ ଶବ୍ଦ ପୂର୍ବରେ ମାଈ ଯୋଗ କରିବା ।

| | |
|---|---|
| ଅଣ୍ଡିରା ଘୋଡ଼ା | ମାଈ ଘୋଡ଼ା |
| ଅଣ୍ଡିରା ବାଘ | ମାଈ ବାଘ |
| ଅଣ୍ଡିରା ଛେଳି | ମାଈ ଛେଳି |

ନିମ୍ନଲିଖିତ ଶବ୍ଦଗୁଡ଼ିକ ସ୍ୱାଭାବିକ ସ୍ତ୍ରୀଲିଙ୍ଗ । ଏମାନଙ୍କର ପୁଂଲିଙ୍ଗ ନାହିଁ । ଯଥା; ବିଦ୍ୟୁତ୍, ରାତ୍ରି, ଲତା, ବୀଣା, ଦିକ୍, ପୃଥିବୀ, ତୃଷା, ନଦୀ, ଲଜ୍ଜା, ଶ୍ରେଣୀ, ଶୋଭା, ସେନା, ଶିଖା, ବୁଦ୍ଧି, ଇଚ୍ଛା, ସମ୍ପଦ, ବିପଦ ଇତ୍ୟାଦି ।

### ପ୍ରଶ୍ନ ।

ଲିଙ୍ଗ କାହାକୁ କହନ୍ତି ? ପୁଂଲିଙ୍ଗ ଓ ସ୍ତ୍ରୀଲିଙ୍ଗର ସଂଜ୍ଞା କହି କ୍ଲୀବ ଲିଙ୍ଗର ପାଞ୍ଚ ଗୋଟି ଉଦାହରଣ ଦିଅ । ପୁଂଲିଙ୍ଗ ଶବ୍ଦକୁ ସ୍ତ୍ରୀଲିଙ୍ଗ କରିବାର କେତେ ଗୋଟି ନିୟମ ଅଛି ? ପ୍ରତ୍ୟେକର ସୂତ୍ର କହି ଦୁଇ ଦୁଇ ଗୋଟି ଉଦାହରଣ ଦିଅ ।

ନିମ୍ନଲିଖିତ ଶବ୍ଦସମୂହର ଲିଙ୍ଗ କହି ସେ ସବୁର ବିପରୀତ ଲିଙ୍ଗ କର ।

ବାଳକ । ପିତା । ଗାଈ । ଶାଶୂ । ମୃଗ । ଗୌରୀ । ଦାସୀ ।

ରାଜ୍ଞୀ । ଭଗବତୀ । ଉପଦେଷ୍ଟ୍ରୀ । ନଟୀ । ମଢ଼ିଆ । ଗାୟକ । ଶୁକ । ଇନ୍ଦ୍ର । ରାଜା । ହଂସ । ଯବନ । ତାମଲୀ । କର୍ତ୍ତା । ତପା । ଭବ । ମାତୁଳ ।

---

## ବଚନ ।

୧୬ । ଯଦ୍ଦ୍ୱାରା ପଦାର୍ଥର ଏକ ବା ବହୁତ ସଂଖ୍ୟା ଜଣାଯାଏ ତାହାକୁ ବଚନ ବୋଲନ୍ତି । ଭାଷାରେ ବଚନ ଦୁଇ ପ୍ରକାର, ଅର୍ଥାତ୍ ଏକବଚନ ଓ ବହୁବଚନ ।

୧୭ । ଏକମାତ୍ର ବ୍ୟକ୍ତି ବା ପଦାର୍ଥବୋଧକ ଶବ୍ଦକୁ ଏକବଚନ ବୋଲାଯାଏ । ଯଥା; ବାଳକ, ବୃକ୍ଷ, ଦେବତା, ରାଜା, ସ୍ତ୍ରୀ, ପର୍ବତ, ନଦୀ, କଲମ, ଛତା, ଡିବ୍ବ, ଦୁଆର, ଚୌକୀ, ପଟ୍ଟା ଇତ୍ୟାଦି ।

୧୮ । ଏକରୁ ଅଧିକ ବ୍ୟକ୍ତି ବା ପଦାର୍ଥବୋଧକ ଶବ୍ଦକୁ ବହୁବଚନ କହନ୍ତି । ଯଥା; ନରମାନେ, ଛାତ୍ରଗଣ, ବୃକ୍ଷସବୁ, ଫଳଗୁଡ଼ିକ, ପକ୍ଷୀଗୁଡ଼ାଏ, ବାଳକେ, ଲୋକେ, ଦେବତାମାନେ, ପଠାସବୁ, ଦଶଜଣ ଲୋକ ଇତ୍ୟାଦି ।

୧୯ । ଏକବଚନରୁ ବହୁବଚନ କରିବାପାଇଁ ପ୍ରଧାନ ଦୁଇଗୋଟି ନିୟମ ଅଛି ।

୨୦ । ଏକବଚନ ଶବ୍ଦ ଶେଷରେ "ମାନେ ବା ମାନ" ଯୋଗ କଲେ ବହୁବଚନ ହୁଏ । ଯଥା; ବାଳକମାନେ, ଅଶ୍ୱମାନେ, କୀଟମାନେ, ପଶୁମାନେ, ବଳଦମାନେ, ଗଛମାନ, ପର୍ବତମାନ ଇତ୍ୟାଦି ।

୨୧ । କେତେକ ଏକବଚନାନ୍ତ ଶବ୍ଦ ଶେଷରେ "ଏ"କାର ଯୋଗ କଲେ ବହୁବଚନ ହୁଏ । ଯଥା; ଲୋକେ, ପଣ୍ଡିତେ, ବାଳକେ, ମୂର୍ଖେ ଇତ୍ୟାଦି ।

୨୨ । କାଳବୋଧକ ଓ ପରିମାଣବାଚକ ଶବ୍ଦ ଶେଷରେ "ଏ"-

କାର ଯୋଗ କଲେ ଏକବଚନ ହୁଏ । ଯଥା; ଦିନେ, ମାସେ, ବର୍ଷେ, ମହଣେ, ସେରେ ଇତ୍ୟାଦି ।

୨୩ । କେତେକ ଏକବଚନାନ୍ତ ଶବ୍ଦ ପୂର୍ବରେ ବା ପରେ ସମୂହାର୍ଥ ଶବ୍ଦ (ସବୁ, ସମସ୍ତ, ଅନେକ, ଗଣ, ସମୂହ, ଗୁଡ଼ି, ଗୁଡ଼ିଏ, ଗୁଡ଼ିକ, ଗୁଡ଼ାକ, ଲୋକ, ବୃନ୍ଦ, ନିଚୟ, ଚୟ, ଲୁଗୁଏ, ଲୁଗୁକ ) ଯୋଗ କଲେ ବହୁବଚନ ହୁଏ । ଯଥା; ଜନଗଣ, ସମସ୍ତ ଛାତ୍ର, ପକ୍ଷୀସମୂହ, ବାଳକବୃନ୍ଦ, ଫଳଗୁଡ଼ିକ, ଛାତ୍ରନିଚୟ ଇତ୍ୟାଦି ।

୨୪ । ଏକବଚନାନ୍ତ ଶବ୍ଦ ପୂର୍ବରେ ସଂଖ୍ୟାବାଚକ ପଦ ଦେଲେ ବହୁବଚନ ହୁଏ । ଯଥା; ଅଠମହଣ ଲବଣ, ବାରଜଣ ଲୋକ, ପାଞ୍ଚଗୋଟି ବୃକ୍ଷ, ଦଶ ଗୋଟି ବଳଦ ଇତ୍ୟାଦି ।

ପ୍ରଶ୍ନ ।

ବଚନ କାହାକୁ ବୋଲନ୍ତି ? ବଚନ କେତେ ଗୋଟି? ପ୍ରତ୍ୟେକର ସଂଜ୍ଞା କହ ; ପାଞ୍ଚଗୋଟି ଏକବଚନ ଓ ଚାରିଗୋଟି ବହୁବଚନାନ୍ତ ଶବ୍ଦର ନାମ ନିର୍ଦ୍ଦେଶ କର । ଏକବଚନ ଶବ୍ଦକୁ ବହୁବଚନ କରିବାର କେତେଗୋଟି ଉପାୟ ଅଛି ? ପ୍ରତି ଧାରାର ସୂତ୍ର କହି ଦୁଇ ଉଦାହରଣ ଦିଅ । କେଉଁ ପର ଶବ୍ଦରେ "ଏ"କାର ଯୋଗ କଲେ ଏକବଚନ ହୁଏ ? ଦୁଇ ଗୋଟି ଉଦାହରଣ ଦିଅ । ନିମ୍ନଲିଖିତ ପଦସବୁର ବଚନ କହି ସେ ସବୁର ଅନ୍ୟ ବଚନ କହ ।

ବାଳକମାନେ । ବୃକ୍ଷ । ପର୍ବତ । ଗ୍ରାମସବୁ । ନଦୀ । କଲମ । ମନୁଷ୍ୟ । ଅଶ୍ୱ । ଦେବୀ । ଲୋକେ । ମାଣେ । ମୂର୍ଖେ । ପକ୍ଷିସମୂହ । ପଣ୍ଡିତନିଚୟ । ଦିନେ । ସେରେ । ପାଞ୍ଚଜଣ ଲୋକ । ଗୁରୁମାଣ । ମାସେ । ଦୁଇବର୍ଷ । ଫଳଗୁଡ଼ିକ । ବାଳକେ । ପତ୍ରଲୁଗୁଏ ।

## କାରକ ।

୨୫ । ଯେଉଁ ପଦର କ୍ରିୟା ସହିତ ଅନ୍ୱୟ ଥାଏ, ତାହାକୁ କାରକ କହନ୍ତି ।

କାରକ ଛ ପ୍ରକାର । ଯଥା; କର୍ତ୍ତା, କର୍ମ, କରଣ, ସମ୍ପ୍ରଦାନ, ଅପାଦାନ, ଏବଂ ଅଧିକରଣ ।

୨୬ । କ୍ରିୟା ସହିତ ଅନ୍ୱୟ ନ ହେବାରୁ ସମ୍ବନ୍ଧକୁ କାରକ ବୋଲା ଯାଏ ନାହିଁ ।

## ବିଭକ୍ତି ।

୨୭ । ଯାହାଦ୍ୱାରା କାରକାଦି ଜଣାଯାଏ ତାହାର ନାମ ବିଭକ୍ତି । ବିଭକ୍ତି ସାତଗୋଟି । ଯଥା; ପ୍ରଥମା, ଦ୍ୱିତୀୟା, ତୃତୀୟା, ଚତୁର୍ଥୀ, ପଞ୍ଚମୀ, ଷଷ୍ଠୀ ଏବ ସପ୍ତମୀ । କର୍ତ୍ତାକାରକରେ ପ୍ରଥମା, କର୍ମକାରକରେ ଦ୍ୱିତୀୟା, କରଣ କାରକରେ ତୃତୀୟା, ସମ୍ପ୍ରଦାନ କାରକରେ ଚତୁର୍ଥୀ, ଅପାଦାନ କାରକରେ ପଞ୍ଚମୀ, ସମ୍ବନ୍ଧ ପଦରେ ଷଷ୍ଠୀ, ଅଧିକରଣ କାରକରେ ସପ୍ତମୀ ବିଭକ୍ତିର ପ୍ରୟୋଗ ହୁଏ ।

## ବିଭକ୍ତି ଚକ୍ର ।

| | ଏକବଚନ | ବହୁବଚନ |
|---|---|---|
| ପ୍ରଥମା | | ମାନେ, ଏ, ସବୁ, ଇତ୍ୟାଦି । |
| ଦ୍ୱିତୀୟା | କୁ, ଙ୍କ, ଙ୍କୁ, | ମାନଙ୍କୁ, ସବୁକୁ । |
| ତୃତୀୟା | ରେ, ଦ୍ୱାରା, କରି, କର୍ତ୍ତୃକ, ଦେଇ, | ମାନଙ୍କରେ, ମାନଙ୍କ ଦ୍ୱାରା, ମାନଙ୍କରେ କରି, ମାନଙ୍କ କର୍ତ୍ତୃକ, ମାନଙ୍କ ଦେଇ, ସବୁରେ । |
| ଚତୁର୍ଥୀ | କୁ, ଙ୍କୁ, ନିମନ୍ତେ, | ମାନଙ୍କୁ, ମାନଙ୍କ ନିମନ୍ତେ, ସବୁକୁ । |

| | ଏକବଚନ | ବହୁବଚନ |
|---|---|---|
| ପଞ୍ଚମୀ | ରୁ, ଠାରୁ, ଠୁଁ | ମାନଙ୍କରୁ, ମାନଙ୍କଠାରୁ, ମାନଙ୍କଠୁଁ, ସବୁରୁ । |
| ଷଷ୍ଠୀ | ର, ଙ୍କର, | ମାନଙ୍କର, ସବୁର । |
| ସପ୍ତମୀ | ରେ, ଠାରେ, ଠିଁ | ମାନଙ୍କରେ, ମାନଙ୍କଠାରେ, ମାନଙ୍କଠିଁ, ସବୁରେ । |

କର୍ତ୍ତା ।

୧୮ । ଯେ କିଛି କରେ ବା ଅନ୍ୟକୁ କରାଏ ସେ କର୍ତ୍ତା । ଯଥା ; ରାମ ଯାଉଅଛି, ବାଳକ ନେଉଅଛି, ଆମ୍ଭେ ବାଳକକୁ ପଠାଉଅଛୁଁ ; ଏଠାରେ କର୍ତ୍ତା ରାମ, ବାଳକ, ଆମ୍ଭେ । କର୍ତ୍ତାକାରକରେ ପ୍ରଥମା-ବିଭକ୍ତି ହୁଏ ।

କର୍ମ ।

୧୯ । କର୍ତ୍ତା କ୍ରିୟାଦ୍ୱାରା ଯାହାକୁ ଲକ୍ଷ କରେ ସେ କର୍ମ । ଯଥା ; ବାଳକ ପାଠ ପଢ଼ିଲା , କୁମାରୀମାନେ ଗୀତ ଗାଉଅଛନ୍ତି , ମୁଁ ଗୋବିନ୍ଦକୁ ଦେଖିଲି ; ଏଠାରେ ପାଠ, ଗୀତ, ଗୋବିନ୍ଦକୁ କର୍ମ-କାରକ । କର୍ମକାରକରେ ଦ୍ୱିତୀୟା ବିଭକ୍ତି ହୁଏ ।

କରଣ ।

୨୦ । କର୍ତ୍ତା ଯାହାଦ୍ୱାରା କାର୍ଯ୍ୟ ସାଧନ କରେ ତାହାକୁ କରଣ କହନ୍ତି । ଯଥା ; ଶିକ୍ଷକ ବେତରେ ଏହି ଦୁଷ୍ଟ ଛାତ୍ରକୁ ଦଣ୍ଡ ଦେଲେ, ସେ ଦାଆରେ ଧାନ୍ୟ ଛେଦନ କରୁଅଛି, ରାମ ପକ୍ଷୀ-କଲମରେ ଏହି ଚିଠି ଲେଖିଲା ; ଏଠାରେ ବେତରେ, ଦାଆରେ, କଲମରେ କର-ଣକାରକ । କରଣକାରକରେ ତୃତୀୟା ବିଭକ୍ତି ହୁଏ ।

ସମ୍ପ୍ରଦାନ ।

୨୧ । ଯାହାକୁ ଦାନ ଦିଆଯାଏ ସେ ସମ୍ପ୍ରଦାନ । ଯଥା ; ସେ ବ୍ରାହ୍ମଣକୁ ବସ୍ତ୍ର ଦେଲା, ବାଳକ ଦେବୀଙ୍କି ପୁଷ୍ପ ଦେଲା, ରାଜା ଦଣ୍-

ଦ୍ରୁମାନଙ୍କୁ ଅର୍ଘ୍ୟଦାନ କଲେ ; ଏଠାରେ ବ୍ରାହ୍ମଣଙ୍କୁ, ଦେବୀଙ୍କି, ଦ୍ରୁମାନଙ୍କୁ ସମ୍ପ୍ରଦାନ କାରକ । ସମ୍ପ୍ରଦାନ କାରକରେ ଚତୁର୍ଥୀ ବିଭକ୍ତି ହୁଏ ।

ଅପାଦାନ ।

୩୨ । ଯାହାଠାରୁ କୌଣସି ବସ୍ତୁ ବା ବ୍ୟକ୍ତି ଚଳିତ, ସ୍ଖଳିତ, ଗୃହୀତ, ପୃଥକ୍, ପରାଜିତ ବା ପ୍ରାପ୍ତ ହୁଏ ତାହାକୁ ଅପାଦନ କହନ୍ତି । ଯଥା; ବାଳକ ଅଶ୍ୱରୁ ପଡ଼ିଲା, ନଦୀ ପର୍ବତରୁ ଜାତ ହୁଏ, ପକ୍ଷିମାନେ ବୃକ୍ଷରୁ ଉଡ଼ିଗଲେ; ଏଠାରେ ଅଶ୍ୱରୁ, ପର୍ବତରୁ, ବୃକ୍ଷରୁ ଅପାଦାନ କାରକ । ଅପାଦାନ କାରକରେ ପଞ୍ଚମୀ ବିଭକ୍ତି ହୁଏ ।

ଅଧିକରଣ ।

୩୩ । ଯେଉଁ ସମୟରେ ବା ଯେଉଁ ସ୍ଥାନରେ କ୍ରିୟା ଘଟଇ ସେ ଅଧିକରଣ । ଅଧିକରଣ ଦୁଇପ୍ରକାର, କାଳାଧିକରଣ ଓ ଆଧାରାଧିକରଣ । ଯଥା; ରାତ୍ରିରେ ଚନ୍ଦ୍ର ଉଦୟ ହୁଅନ୍ତି, ବ୍ୟାଘ୍ର ଅରଣ୍ୟରେ ବାସ କରେ, ବାଳକମାନେ ବିଦ୍ୟାଳୟରେ ପଢୁଅଛନ୍ତି, ପ୍ରଭାତରେ ସୂର୍ଯ୍ୟୋଦୟ ହୁଏ; ଏଠାରେ ରାତ୍ରିରେ ଓ ପ୍ରଭାତରେ କାଳାଧିକରଣ; ଅରଣ୍ୟରେ, ବିଦ୍ୟାଳୟରେ ଆଧାରାଧିକରଣ । ଅଧିକରଣ କାରକରେ ସପ୍ତମୀ ବିଭକ୍ତି ହୁଏ ।

ସମ୍ବନ୍ଧ ।

୩୪ । ଏକ ପଦର ସହିତ ଅନ୍ୟ ପଦର ସମ୍ପର୍କକୁ ସମ୍ବନ୍ଧ ବୋଲାଯାଏ । ଯଥା; ବାଳକର ପୁସ୍ତକ ନୂତନ ଅଟେ, ପରମେଶ୍ୱରଙ୍କ ମହିମା ଅସୀମ, ରାଜାଙ୍କ ମସ୍ତକରେ ସ୍ୱର୍ଣ୍ଣମୁକୁଟ ଅଛି; ଏଠାରେ ବାଳକର, ପରମେଶ୍ୱରଙ୍କ, ରାଜାଙ୍କ ସମ୍ବନ୍ଧ ପଦ । ସମ୍ବନ୍ଧ ପଦରେ ଷଷ୍ଠୀ ବିଭକ୍ତି ହୁଏ ।

## ସମ୍ବୋଧନ ।

୩୫ । ଡାକିବାକୁ ସମ୍ବୋଧନ କହନ୍ତି । ସମ୍ବୋଧନ ପଦରେ ପ୍ରଥମା ବିଭକ୍ତି ହୁଏ, ମାତ୍ର କ୍ରିୟା ସହିତ ଅନ୍ୱୟ ନ ହେବାରୁ ଏହାକୁ କାରକ ବୋଲି ଯାଇ ନ ପାରେ । ଯଥା; ବାଳକମାନେ ମନୋଯୋଗପୂର୍ବକ ପଢ଼ । ଏଠାରେ ବାଳକମାନେ ସମ୍ବୋଧନ ।

୩୬ । ମାନ୍ୟାର୍ଥରେ ସମ୍ବୋଧନ ପଦର ପୂର୍ବରେ ହେ, ଭୋ, ଗୋ, ଅହେ, ମହାଶୟ, ମଣିମା, ଶ୍ରୀମୁ ଏବଂ ଅମାନ୍ୟ ଅର୍ଥରେ ଅରେ, ରେ, ପ୍ରଭୃତି ସମ୍ବୋଧନସୂଚକ ବିଭକ୍ତି ପ୍ରୟୋଗ ହୁଏ । ଯଥା; ହେ ଗୁରୋ ! ଏଥିର କାରଣ କି ? ଅହେ ମିତ୍ର ! ଆସ । ଅରେ ମୂର୍ଖ ବାହାରି ଯାଅ । ଏଠାରେ ହେ ଗୁରୋ, ଅହେ ମିତ୍ର, ଅରେ ମୂର୍ଖ ! ସମ୍ବୋଧନ ଅଟେ । ସମ୍ବୋଧନସୂଚକ ବିଭକ୍ତି ସମ୍ବୋଧନ ପଦର ପର-ରେ ମଧ୍ୟ ବ୍ୟବହାର କରାଯାଏ । ଯଥା; ମାଗୋ ! କଣ ଖାଇବ ? ଇତ୍ୟାଦି ।

୩୭ । ନିମ୍ନଲିଖିତ ଶବ୍ଦର ସମ୍ବୋଧନରେ ରୂପାନ୍ତର ହୁଏ ।

| ମୂଳଶବ୍ଦ | ସମ୍ବୋଧନରେ | ମୂଳଶବ୍ଦ | ସମ୍ବୋଧନରେ |
|---|---|---|---|
| ବାଳା | ବାଳେ | ଦେବୀ | ଦେବି |
| ସଖି | ସଖେ | ଗୁରୁ | ଗୁରୋ |
| ବଧୂ | ବଧୁ | ପିତୃ | ପିତଃ |
| ସ୍ୱାମୀ | ସ୍ୱାମି | | |

---

## ଅର୍ଥ ବିଶେଷ ।

୩୮ । ନାମକୁ ଉତ୍ତର ପ୍ରଥମା ବିଭକ୍ତି ହୁଏ । ଯଥା; ବାଳକ, ବୃକ୍ଷ, ପର୍ବତ ଇତ୍ୟାଦି ।

୩୯ । ଧିକ୍ ବିନା ପ୍ରଭୃତି ଶବ୍ଦ ଯୋଗରେ ଦ୍ୱିତୀୟା ବିଭକ୍ତି ହୁଏ । ଯଥା; ପାପିକି ଧିକ୍ । ଶ୍ରମ ବିନା ସୁଖ ହୁଏ ନାହିଁ ।

୪୦ । ଗୋତ୍ର, ଜାତି ପ୍ରଭୃତି ପଦରେ ତୃତୀୟା ବିଭକ୍ତି ହୁଏ । ଯଥା; ଗୋତ୍ରରେ କାଶ୍ୟପ, ଜାତିରେ କ୍ଷତ୍ରିୟ, ଏକରେ ଉଣା, ନାମରେ ତ୍ରିଲୋଚନ ଇତ୍ୟାଦି ।

୪୧ । ନିମିତ୍ତ ଅର୍ଥରେ ଓ ରୁଚ୍ୟର୍ଥ ଧାତୁରେ ଚତୁର୍ଥୀ ବିଭକ୍ତି ହୁଏ । ଯଥା; ଅନ୍ଧକୁ ଦାସ ନାହିଁ, ତାହାକୁ ଘୃତ ରୁଚୁ ନାହିଁ, ଇତ୍ୟାଦି ।

୪୨ । ଯାହାଠାରୁ ଭୟ, ସମ୍ଭବ, ନିବାରଣ, ଅଧ୍ୟୟନ, ଗୋପନ ଆଦି ହୁଏ ତହିଁରେ ପଞ୍ଚମୀ ବିଭକ୍ତି ହୁଏ । ଯଥା; ରାଜାଙ୍କଠାରୁ ଭୟ ପାଇଅଛୁ, ଗଙ୍ଗା ହିମାଳୟରୁ ସମ୍ଭୂତ ହୋଇଅଛୁ, ସେ ମୋତେ ଖେଳରୁ ନିବାରଣ କରୁଅଛୁ, ମୁଁ ଶିକ୍ଷକଙ୍କଠାରୁ ବ୍ୟାକରଣ ପଢ଼ିଅଛୁ, ତୁ ଶିକ୍ଷକଙ୍କଠାରୁ ଲୁଚୁଅଛୁ ଇତ୍ୟାଦି ।

୪୩ । ହେତୁ, ସକାଶେ, ଲାଗି, ଯୋଗ ଇତ୍ୟାଦି ହେତୁପଦ ତୃତୀୟା ଓ ପଞ୍ଚମୀ ବିଭକ୍ତି ସ୍ୱରୂପ । ଯଥା; ସେ ଅନ୍ନ ହେତୁ ବସିଅଛୁ, ମୁଁ ଏହା ତୋହ ଯୋଗ ପାଇଲି, ଇତ୍ୟାଦି ।

୪୪ । ଦୁଇ ବ୍ୟକ୍ତି ବା ପଦାର୍ଥ ତୁଳନା କରିବା ସମୟରେ ଅପେକ୍ଷାର୍ଥ ପଦ ପ୍ରୟୋଗ ହୁଏ, ତାହା ପଞ୍ଚମୀ ବିଭକ୍ତିର ସମାନ । ଯଥା; ମୂର୍ଖ ଅପେକ୍ଷା ପଣ୍ଡିତ ଉତ୍ତମ ।

୪୫ । ସହିତ, ତୁଲ୍ୟ, ସଙ୍ଗ, ଅନୁସାରେ, ପ୍ରତି ପ୍ରଭୃତି ଶବ୍ଦ ଯୋଗରେ ଷଷ୍ଠୀ ବିଭକ୍ତି ହୁଏ । ଯଥା; ମୋର ସଙ୍ଗରେ ଆସିଲା, ସେ ଶ୍ୟାମର ପ୍ରତି ଅତ୍ୟାଚାର କରିଅଛୁ, ଇତ୍ୟାଦି ।

୪୬ । ଅନେକ ମଧ୍ୟରେ ଏକର ଆଧିକ୍ୟ ବା ନ୍ୟୂନତା ଅର୍ଥ ହେଲେ ନୂନପଦରେ ଷଷ୍ଠୀ ବା ସପ୍ତମୀ ବିଭକ୍ତି ହୁଏ । ଯଥା; ପୁରୁଷ ମାନଙ୍କର ବା ପୁରୁଷମାନଙ୍କରେ ଉତ୍ତମ ପୁରୁଷୋତ୍ତମ, ଦେବତାମାନଙ୍କର ବା ଦେବତାମାନଙ୍କରେ ରାଜା ଦେବରାଜା ଇତ୍ୟାଦି ।

## ଶବ୍ଦରୂପ ।

୪୭ । ବିଶେଷ୍ୟ ଓ ସର୍ବନାମ ବିଭକ୍ତି ଭେଦରେ ( ବା କାରକ ଭେଦରେ) ରୂପାନ୍ତର ହୁଏ, ଅଉ କେବେ୨ ବିଶେଷଣ ମଧ୍ୟ ବିଶେଷ୍ୟ ହେଲେ ରୂପ ହୋଇଥାଏ , ମାତ୍ର ଜାତିବାଚକ ଓ ଦ୍ରବ୍ୟବାଚକ ଭିନ୍ନ ନାମବାଚକ, ଭାବବାଚକ ଓ କ୍ରିୟାବାଚକ କେବଳ ଏକବଚନରେ ରୂପ କରାଯାଏ ।

୪୮ । ଶବ୍ଦରୂପ ଦୁଇ ପ୍ରକାର, ସାଧାରଣ ବା ଅମାନ୍ୟାର୍ଥ ଓ ମାନ୍ୟାର୍ଥ । ମାନ୍ୟାର୍ଥ ରୂପରେ "ଙ୍କ" ଯୋଗ କରି ରୂପ କରିବାକୁ ହୁଏ ।

୪୯ । ଅପ୍ରାଣିବାଚକ ଶବ୍ଦରୂପରେ "ମାନ" ଓ "ସବୁ" ଉଭୟ ଯୋଗ କରା ଯାଇ ପାରେ, ମାତ୍ର "ସବୁ" ଯୋଗ କରି ରୂପ କରିବା ଉତ୍ତମ ।

### ବିଶେଷ୍ୟର ରୂପ ।

### ବାଳକ ଶବ୍ଦ ।

### ଅମାନ୍ୟାର୍ଥରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ବାଳକ | ବାଳକମାନେ |
| କର୍ମ | ବାଳକକୁ | ବାଳକମାନଙ୍କୁ |
| କରଣ | ବାଳକଦ୍ୱାରା | ବାଳକମାନଙ୍କ ଦ୍ୱାରା |
| ସମ୍ପ୍ରଦାନ | ବାଳକକୁ | ବାଳକମାନଙ୍କୁ |
| ଅପାଦାନ | ବାଳକଠାରୁ | ବାଳକମାନଙ୍କଠାରୁ |
| ଅଧିକରଣ | ବାଳକଠାରେ | ବାଳକମାନଙ୍କଠାରେ |
| ସମ୍ବନ୍ଧ | ବାଳକର | ବାଳକମାନଙ୍କର |
| ସମ୍ବୋଧନ | ହେ ବାଳକ | ହେ ବାଳକମାନେ |

ତଦ୍ରୂପ ମନୁଷ୍ୟ, ପୁତ୍ର, କନ୍ୟା, ବନ୍ଧୁ, ମିତ୍ର, ଶତ୍ରୁ ଶବ୍ଦ ରୂପ ହେବ । କେବଳ ମାନ୍ୟାର୍ଥରେ ଙ୍କୁ ଓ ଙ୍କର ପ୍ରୟୋଗ ହୁଏ । ଯଥା; ମନୁଷ୍ୟଙ୍କୁ ମନୁଷ୍ୟଙ୍କଦ୍ୱାରା, ମନୁଷ୍ୟଙ୍କଠାରୁ, ମନୁଷ୍ୟଙ୍କର, ମନୁଷ୍ୟଙ୍କଠାରେ ଇତ୍ୟାଦି ।

ନାରୀ ଶବ୍ଦ ।

ସାଧାରଣରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ନାରୀ | ନାରୀମାନେ |
| କର୍ମ | ନାରୀକୁ | ନାରୀମାନଙ୍କୁ |
| କରଣ | ନାରୀଦ୍ୱାରା | ନାରୀମାନଙ୍କ ଦ୍ୱାରା |
| ସମ୍ପ୍ରଦାନ | ନାରୀକୁ | ନାରୀମାନଙ୍କୁ |
| ଅପାଦାନ | ନାରୀଠାରୁ | ନାରୀମାନଙ୍କଠାରୁ |
| ଅଧିକରଣ | ନାରୀଠାରେ | ନାରୀମାନଙ୍କଠାରେ |
| ସମ୍ବନ୍ଧ | ନାରୀର | ନାରୀମାନଙ୍କର |
| ସମ୍ବୋଧନ | ହେ ନାରୀ | ହେ ନାରୀମାନେ |

ତଦ୍ରୂପ ଯୁବତୀ, ବଧୂ, ଦେବୀ ପ୍ରଭୃତି ଶବ୍ଦ ରୂପ ହେବ । କିନ୍ତୁ ଦୀର୍ଘ ଈକାରାନ୍ତ ପୁଂଲିଙ୍ଗ ଶବ୍ଦ ପ୍ରଥମା ଏକବଚନକୁ ଛାଡ଼ି ଅନ୍ୟ ବିଭକ୍ତିରେ ହ୍ରସ୍ୱ ଇକାରାନ୍ତ ହୁଏ ।

ପିତା ଶବ୍ଦ ।

ମାନ୍ୟାର୍ଥରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ପିତା | ପିତାମାନେ |
| କର୍ମ | ପିତାଙ୍କୁ | ପିତାମାନଙ୍କୁ |

| | ଏକବଚନ | ବହୁବଚନ |
|---|---|---|
| କରଣ | ପିତାଙ୍କ ଦ୍ୱାରା | ପିତାମାନଙ୍କଦ୍ୱାରା |
| ସମ୍ପ୍ରଦାନ | ପିତାଙ୍କୁ | ପିତାମାନଙ୍କୁ |
| ଅପାଦାନ | ପିତାଙ୍କଠାରୁ | ପିତାମାନଙ୍କଠାରୁ |
| ଅଧିକରଣ | ପିତାଙ୍କଠାରେ | ପିତାମାନଙ୍କଠାରେ |
| ସମ୍ବନ୍ଧ | ପିତାଙ୍କର | ପିତାମାନଙ୍କର |
| ସମ୍ବୋଧନ | ହେ ପିତଃ | ହେ ପିତାମାନେ |

ତଦ୍ରୂପ ରାଜା, ଶିକ୍ଷକ, ଗୁରୁ, ପ୍ରଭୁ, ଶିଶୁ ପ୍ରଭୃତି ରୂପ ହେବ । ମାତ୍ର ରାଜା ଶବ୍ଦ ସମ୍ବୋଧନରେ ରାଜନ୍ ଏବଂ ଗୁରୁ ଓ ପ୍ରଭୁ ଶବ୍ଦ ଗୁରୋ ଓ ପ୍ରଭୋ ହୁଏ ।

### ମାତା ଶବ୍ଦ ।

### ମାନବାର୍ଥରେ ।

| | ଏକବଚନ | ବହୁବଚନ |
|---|---|---|
| ୧ କର୍ତ୍ତା | ମାତା | ମାତାମାନେ |
| କର୍ମ | ମାତାଙ୍କୁ | ମାତାମାନଙ୍କୁ |
| କରଣ | ମାତାଙ୍କ ଦ୍ୱାରା | ମାତାମାନଙ୍କଦ୍ୱାରା |
| ସମ୍ପ୍ରଦାନ | ମାତାଙ୍କୁ | ମାତାମାନଙ୍କୁ |
| ଅପାଦାନ | ମାତାଙ୍କଠାରୁ | ମାତାମାନଙ୍କଠାରୁ |
| ଅଧିକରଣ | ମାତାଙ୍କଠାରେ | ମାତାମାନଙ୍କଠାରେ |
| ସମ୍ବନ୍ଧ | ମାତାଙ୍କର | ମାତାମାନଙ୍କର |
| ସମ୍ବୋଧନ | ହେ ମାତଃ | ହେ ମାତାମାନେ |

ଏହିରୂପେ ରାଣୀ, ଆଈ ରୂପ ହେବ ।

## ସିଂହ ଶବ୍ଦ ।

### ସାଧାରଣରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ସିଂହ | ସିଂହମାନେ |
| କର୍ମ | ସିଂହକୁ | ସିଂହମାନଙ୍କୁ |
| କରଣ | ସିଂହଦ୍ୱାର | ସିଂହମାନଙ୍କଦ୍ୱାରା |
| ସମ୍ପ୍ରଦାନ | ସିଂହକୁ | ସିଂହମାନଙ୍କୁ |
| ଅପାଦାନ | ସିଂହଠାରୁ | ସିଂହମାନଙ୍କଠାରୁ |
| ଅଧିକରଣ | ସିଂହଠାରେ | ସିଂହମାନଙ୍କଠାରେ |
| ସମ୍ବନ୍ଧ | ସିଂହର | ସିଂହମାନଙ୍କର |
| ସମ୍ବୋଧନ | ହେ ସିଂହ | ହେ ସିଂହମାନେ |

ତଦ୍ରୂପ ବ୍ୟାଘ୍ର, ଅଶ୍ୱ, କୁକ୍କୁର, ଗାଈ ପ୍ରଭୃତି ରୂପ ହେବ ।

## ପର୍ବତ ଶବ୍ଦ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ପର୍ବତ | ପର୍ବତ ସବୁ |
| କର୍ମ | ପର୍ବତକୁ | ପର୍ବତ ସବୁକୁ |
| କରଣ | ପର୍ବତରେ | ପର୍ବତ ସବୁରେ |
| ସମ୍ପ୍ରଦାନ | ପର୍ବତକୁ | ପର୍ବତ ସବୁକୁ |
| ଅପାଦାନ | ପର୍ବତରୁ | ପର୍ବତ ସବୁରୁ |
| ଅଧିକରଣ | ପର୍ବତର | ପର୍ବତ ସବୁର |
| ସମ୍ବୋଧନ | ହେ ପର୍ବତ | ହେ ପର୍ବତ ସବୁ |

ଏହିରୂପେ କମଳ, କାଗଜ, ପୁସ୍ତକ, ବୃକ୍ଷ ପ୍ରଭୃତି ଅପ୍ରାଣିବାଚକ ଶବ୍ଦ ରୂପ ହେବ ।

## ସର୍ବନାମ ।

୫୦ । ଯେଉଁ ଶବ୍ଦ ବିଶେଷ୍ୟର ପରିବର୍ତ୍ତରେ ବ୍ୟବହୃତ ହୁଏ ତାହାକୁ ସର୍ବନାମ କହନ୍ତି । ଯଥା; ମୁଁ, ତୁ, ସେ, ଯେ, କିଏ, କେଉଁ, ଏହି ଇତ୍ୟାଦି ।

୫୧ । ସର୍ବନାମ ଛଅ ପ୍ରକାର । ଯଥା; ନାମବାଚକ, ନିଶ୍ଚୟବାଚକ, ଅନିଶ୍ଚୟବାଚକ, ପ୍ରଶ୍ନବାଚକ, ସମ୍ବନ୍ଧବାଚକ ଏବଂ ଅଧିକାରବାଚକ ସର୍ବନାମ ।

୫୨ । ନାମବାଚକ ସର୍ବନାମ—ମୁ, ତୁ, ସେ । "ମୁ" କହିବା ବ୍ୟକ୍ତିପାଇଁ ବ୍ୟବହାର କରାଯିବାରୁ ପ୍ରଥମ ବା ଉତ୍ତମ ପୁରୁଷ । "ତୁ" ସମ୍ବୋଧ୍ୟ ବ୍ୟକ୍ତିପାଇଁ ବ୍ୟବହାର କରାଯିବାରୁ ଦ୍ୱିତୀୟ ବା ମଧ୍ୟମ ପୁରୁଷ କହନ୍ତି । "ସେ" ମୁ ଓ ତୁ ଭିନ୍ନ ବ୍ୟକ୍ତି ବା ପଦାର୍ଥ ପାଇ ବ୍ୟବହାର କରାଯିବାରୁ ଏହାକୁ ତୃତୀୟ ବା ଅନ୍ୟ ପୁରୁଷ କହନ୍ତି ।

୫୩ । ନିଶ୍ଚୟବାଚକ ସର୍ବନାମ—ନିକଟସ୍ଥ ବ୍ୟକ୍ତି ବା ପଦାର୍ଥର ବଦଳରେ ବସେ । ଯଥା; ଏ, ଏହି, ଏହା, ଇହା ଇତ୍ୟାଦି ।

୫୪ । ଅନିଶ୍ଚୟବାଚକ ସର୍ବନାମ—ଅନିଶ୍ଚୟ ସ୍ଥଳରେ ବ୍ୟବହାର ହୁଏ । ଯଥା; କେହି, କେହୁ, କୌଣସି ।

୫୫ । ପ୍ରଶ୍ନବାଚକ ସର୍ବନାମ—କିଏ, କି, କଣ, କେବଣ, କେଉଁ, କେ ।

୫୬ । ସମ୍ବନ୍ଧବାଚକ ସର୍ବନାମ—ଯେ, ଯେଉଁ, ଯାହା ।

୫୭ । ଅଧିକାରବାଚକ ସର୍ବନାମ—ଆପେ, ନିଜେ, ସ୍ୱୟଂ, ଆତ୍ମା, ଆପଣା ।

### ପ୍ରଶ୍ନ ।

ସର୍ବନାମ କାହାକୁ କହନ୍ତି ? ସର୍ବନାମ କେତେ ପ୍ରକାର ? ସର୍ବ-

ନାମର ଦୁଇଗୋଟି ଏବଂ ଅନିଶ୍ଚୟବାଚକ ସର୍ବନାମର ତିନିଗୋଟି ଉଦାହରଣ ଦିଅ । ମୁଁ, ତୁ, ଓ ସେ, କି ଜାତିର ସର୍ବନାମ ଅଟେ ? ଆପଣ କେଉଁ ଶବ୍ଦପାଇଁ ଓ କେତେବେଳେ ବ୍ୟବହାର ହୁଏ ?

ନିମ୍ନଲିଖିତ ସର୍ବନାମ ସବୁ କେଉଁ ଶ୍ରେଣୀଭୁକ୍ତ ?

ଏହି । ଯେ । ନିଜେ । ସେ । କି । ଆପଣ । କୌଣସି । ଆପଣା । ତୁ । ଆପେ । ମୁଁ । କେହି । ଇହା । କିଏ । ସ୍ୱୟଂ । କଣ । ଅସ୍ମା । ଯାହା । କେଉଁ । ଏହା ।

---

### ସର୍ବନାମର ରୂପ ।

୬୮ । ପୁରୁଷ, ବଚନ ଓ କାରକଭେଦରେ ସର୍ବନାମର ରୂପାନ୍ତର ହୁଏ । ସର୍ବନାମ ବିଶେଷ୍ୟ ବଦଳରେ ବ୍ୟବହୃତ ହେଉଥିବାରୁ ଏହାର ସମ୍ବୋଧନ ନାହିଁ ।

୬୯ । ଯାହାଦ୍ୱାରା କ୍ରିୟାର ପ୍ରଭେଦ ଜଣାଯାଏ ତାହାକୁ ପୁରୁଷ କହନ୍ତି । ପୁରୁଷ ତିନିଗୋଟି, ପ୍ରଥମ ପୁରୁଷ, ଦ୍ୱିତୀୟ ପୁରୁଷ, ତୃତୀୟ ପୁରୁଷ । "ମୁଁ" ପ୍ରଥମ ପୁରୁଷ, ତୁ ଦ୍ୱିତୀୟ ପୁରୁଷ, ସେ ତୃତୀୟ ପୁରୁଷ । ପ୍ରଥମ ପୁରୁଷ ମୁଁ ମାନ୍ୟ ହେଲେ ଆମ୍ଭେ, ଦ୍ୱିତୀୟ ପୁରୁଷ "ତୁ" ମାନ୍ୟ ହେଲେ ତୁମ୍ଭେ, ଅତି ମାନ୍ୟରେ ଆପଣ ।

ସଂସ୍କୃତଭାଷାରେ ପ୍ରଥମ ପୁରୁଷକୁ ଉତ୍ତମ ପୁରୁଷ, ଦ୍ୱିତୀୟ ପୁରୁଷକୁ ମଧ୍ୟମ ପୁରୁଷ ଏବଂ ତୃତୀୟ ପୁରୁଷକୁ ଅନ୍ୟ ପୁରୁଷ କହନ୍ତି ।

### ଅସ୍ମଦ୍ (ମୁଁ) ଶବ୍ଦ ।

ଅମାନ୍ୟାର୍ଥରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ମୁଁ | ଆମ୍ଭେମାନେ |
| କର୍ମ | ମୋତେ, ମତେ | ଆମ୍ଭମାନଙ୍କୁ |

| | ଏକବଚନ | ବହୁବଚନ |
|---|---|---|
| କରଣ | ମୋହଦ୍ୱାରା, ମୋଦ୍ୱାରା | ଅମ୍ଭମାନଙ୍କଦ୍ୱାରା |
| ସମ୍ପ୍ରଦାନ | ମୋତେ, ମତେ | ଅମ୍ଭମାନଙ୍କୁ |
| ଅପାଦାନ | ମୋହଠାରୁ, ମୋଠାରୁ | ଅମ୍ଭମାନଙ୍କଠାରୁ |
| ଅଧିକରଣ | ମୋହଠାରେ, ମୋଠାରେ | ଅମ୍ଭମାନଙ୍କଠାରେ |
| ସମ୍ବନ୍ଧ | ମୋହର, ମୋର | ଅମ୍ଭମାନଙ୍କର |

ସର୍ବନାମର ସମ୍ବୋଧନ ନାହିଁ ।

ଅସ୍ମଦ୍ (ମୁ) ଶବ୍ଦ ।

ମାନ୍ୟାର୍ଥରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ଅମ୍ଭେ | ଅମ୍ଭେମାନେ |
| କର୍ମ | ଅମ୍ଭଙ୍କୁ | ଅମ୍ଭମାନଙ୍କୁ |
| କରଣ | ଅମ୍ଭଦ୍ୱାରା | ଅମ୍ଭମାନଙ୍କ ଦ୍ୱାରା |
| ସମ୍ପ୍ରଦାନ | ଅମ୍ଭଙ୍କୁ | ଅମ୍ଭମାନଙ୍କୁ |
| ଅପାଦାନ | ଅମ୍ଭଠାରୁ | ଅମ୍ଭମାନଙ୍କଠାରୁ |
| ଅଧିକରଣ | ଅମ୍ଭଠାରେ | ଅମ୍ଭମାନଙ୍କଠାରେ |
| ସମ୍ବନ୍ଧ | ଅମ୍ଭର | ଅମ୍ଭମାନଙ୍କର |

ଯୁଷ୍ମଦ୍ (ତୁ) ଶବ୍ଦ ।

ଅମାନ୍ୟାର୍ଥରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ତୁ | ତୁମ୍ଭେମାନେ |
| କର୍ମ | ତୋତେ, ତତେ | ତୁମ୍ଭମାନଙ୍କୁ |
| କରଣ | ତୋଦ୍ୱାରା, ତୋହଦ୍ୱାରା | ତୁମ୍ଭମାନଙ୍କ ଦ୍ୱାରା |

| | ଏକବଚନ | ବହୁବଚନ |
|---|---|---|
| ସମ୍ପ୍ରଦାନ | ତୋତେ, ତତେ | ତୁମ୍ଭମାନଙ୍କୁ |
| ଅପାଦାନ | ତୋଠାରୁ, ତୋହଠାରୁ | ତୁମ୍ଭମାନଙ୍କଠାରୁ |
| ଅଧିକରଣ | ତୋଠାରେ, ତୋହଠାରେ | ତୁମ୍ଭମାନଙ୍କଠାରେ |
| ସମ୍ବନ୍ଧ | ତୋହର, ତୋର | ତୁମ୍ଭମାନଙ୍କର |

ଯୁଷ୍ମଦ୍ ( ତୁ ) ଶବ୍ଦ ।

ମାନ୍ୟାର୍ଥରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ତୁମ୍ଭେ | ତୁମ୍ଭେମାନେ |
| କର୍ମ | ତୁମ୍ଭଙ୍କୁ | ତୁମ୍ଭମାନଙ୍କୁ |
| କରଣ | ତୁମ୍ଭଦ୍ୱାରା | ତୁମ୍ଭମାନଙ୍କ ଦ୍ୱାରା |
| ସମ୍ପ୍ରଦାନ | ତୁମ୍ଭଙ୍କୁ | ତୁମ୍ଭମାନଙ୍କୁ |
| ଅପାଦାନ | ତୁମ୍ଭଠାରୁ | ତୁମ୍ଭମାନଙ୍କଠାରୁ |
| ଅଧିକରଣ | ତୁମ୍ଭଠାରେ | ତୁମ୍ଭମାନଙ୍କଠାରେ |
| ସମ୍ବନ୍ଧ | ତୁମ୍ଭର | ତୁମ୍ଭମାନଙ୍କର |

ଯୁଷ୍ମଦ୍ (ତୁ) ଶବ୍ଦ ।

ଅତି ମାନ୍ୟାର୍ଥରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ଆପଣ | ଆପଣମାନେ |
| କର୍ମ | ଆପଣଙ୍କୁ | ଆପଣମାନଙ୍କୁ |
| କରଣ | ଆପଣଙ୍କଦ୍ୱାରା | ଆପଣମାନଙ୍କ ଦ୍ୱାରା |
| ସମ୍ପ୍ରଦାନ | ଆପଣଙ୍କୁ | ଆପଣମାନଙ୍କୁ |
| ଅପାଦାନ | ଆପଣଙ୍କଠାରୁ | ଆପଣମାନଙ୍କଠାରୁ |

| | ଏକବଚନ | ବହୁବଚନ |
|---|---|---|
| ଅଧିକରଣ | ଆପଣଙ୍କଠାରେ | ଆପଣମାନଙ୍କଠାରେ |
| ସମ୍ବନ୍ଧ | ଆପଣଙ୍କର | ଆପଣମାନଙ୍କର |

ତଦ୍ ( ସେ ) ଶବ୍ଦ ।

ପ୍ରାଣିବାଚକରେ ।

ଅମାନ୍ୟାର୍ଥରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ସେ | ସେମାନେ |
| କର୍ମ | ତାହାକୁ | ସେମାନଙ୍କୁ |
| କରଣ | ତାହାଦ୍ୱାରା | ସେମାନଙ୍କ ଦ୍ୱାରା |
| ସମ୍ପ୍ରଦାନ | ତାହାକୁ | ସେମାନଙ୍କୁ |
| ଅପାଦାନ | ତାହାଠାରୁ | ସେମାନଙ୍କଠାରୁ |
| ଅଧିକରଣ | ତାହାଠାରେ | ସେମାନଙ୍କଠାରେ |
| ସମ୍ବନ୍ଧ | ତାହାର | ସେମାନଙ୍କର |

ତଦ୍ ( ସେ ) ଶବ୍ଦ ।

ମାନ୍ୟାର୍ଥରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ସେ | ସେମାନେ |
| କର୍ମ | ତାହାଙ୍କୁ | ସେମାନଙ୍କୁ |
| କରଣ | ତାହାଙ୍କ ଦ୍ୱାରା | ସେମାନଙ୍କ ଦ୍ୱାରା |
| ସମ୍ପ୍ରଦାନ | ତାହାଙ୍କୁ | ସେମାନଙ୍କୁ |
| ଅପାଦାନ | ତାହାଙ୍କଠାରୁ | ସେମାନଙ୍କଠାରୁ |
| ଅଧିକରଣ | ତାହାଙ୍କଠାରେ | ସେମାନଙ୍କଠାରେ |
| ସମ୍ବନ୍ଧ | ତାହାଙ୍କର | ସେମାନଙ୍କର |

## ସେ ଶବ୍ଦ ।

### ଅପ୍ରାଣିବାଚକରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ତାହା | ସେ ସବୁ |
| କର୍ମ | ତାହା, ତହିଁକି, ସେଥିକି | ସେସବୁ, ସେ ସବୁଥିକି |
| କରଣ | ତହିଁରେ, ସେଥିରେ | ସେ ସବୁରେ, ସେ ସବୁଥିରେ |
| ସମ୍ପ୍ରଦାନ | ତାହା, ତହିଁକି, ସେଥିକି, | ସେ ସବୁ, ସେ ସବୁଥିକି- |
| ଅପାଦାନ | ତହିଁରୁ, ସେଥିରୁ | ସେ ସବୁଥିରୁ |
| ଅଧିକରଣ | ତହିଁରେ, ସେଥିରେ | ସେ ସବୁରେ, ସେ ସବୁଥିରେ |
| ସମ୍ବନ୍ଧ | ହିଁର, ସେଥିର | ସେ ସବୁର, ସେ ସବୁଥିର |

## ଅପଣା ଶବ୍ଦ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ଅପଣା | ଅପଣାମାନେ ବା ଅପଣା ୨ । |
| କର୍ମ | ଅପଣାକୁ | ଅପଣାମାନଙ୍କୁ ବା ଅପଣା ୨ କୁ । |
| କରଣ | ଅପଣା ଦ୍ୱାରା | ଅପଣାମାନଙ୍କ ଦ୍ୱାରା ବା ଅପଣା ୨ ଦ୍ୱାରା । |
| ସମ୍ପ୍ରଦାନ | ଅପଣାକୁ | ଅପଣାମାନଙ୍କୁ ବା ଅପଣା ୨ କୁ |
| ଅପାଦାନ | ଅପଣାଠାରୁ | ଅପଣାମାନଙ୍କଠାରୁ ବା ଅପଣା ୨ ଠାରୁ । |
| ଅଧିକରଣ | ଅପଣାଠାରେ | ଅପଣାମାନଙ୍କଠାରେ ବା ଅପଣା ୨ ଠାରେ । |

| | ଏକବଚନ | ବହୁବଚନ |
|---|---|---|
| ସମ୍ବନ୍ଧ | ଆପଣାର | ଆପଣାମାନଙ୍କର ବା ଆପଣା ୨ ର |

ଏ ଶବ୍ଦ ।

ପ୍ରାଣିବାଚକ ଅମାନ୍ୟାର୍ଥରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ଏ | ଏମାନେ |
| କର୍ମ | ଏହାକୁ | ଏମାନଙ୍କୁ |
| କରଣ | ଏହାଦ୍ୱାରା | ଏମାନଙ୍କ ଦ୍ୱାରା |
| ସମ୍ପ୍ରଦାନ | ଏହାକୁ | ଏମାନଙ୍କୁ |
| ଅପାଦାନ | ଏହାଠାରୁ | ଏମାନଙ୍କଠାରୁ |
| ଅଧିକରଣ | ଏହାଠାରେ | ଏମାନଙ୍କଠାରେ |
| ସମ୍ବନ୍ଧ | ଏହାର | ଏମାନଙ୍କର |

ଏ ଶବ୍ଦ ।

ମାନ୍ୟାର୍ଥରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ଏ | ଏମାନେ |
| କର୍ମ | ଏହାଙ୍କୁ | ଏମାନଙ୍କୁ |
| କରଣ | ଏହାଙ୍କଦ୍ୱାରା | ଏମାନଙ୍କ ଦ୍ୱାରା |
| ସମ୍ପ୍ରଦାନ | ଏହାଙ୍କୁ | ଏମାନଙ୍କୁ |
| ଅପାଦାନ | ଏହାଙ୍କଠାରୁ | ଏମାନଙ୍କଠାରୁ |
| ଅଧିକରଣ | ଏହାଙ୍କଠାରେ | ଏମାନଙ୍କଠାରେ |
| ସମ୍ବନ୍ଧ | ଏହାଙ୍କର | ଏମାନଙ୍କର |

## ଏ ଶବ୍ଦ ।

### ଅପ୍ରାଣିବାଚକରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ଇହା ବା ଏ | ଏ ସବୁ |
| କର୍ମ | ଇହାକୁ ବା ଏହାକୁ | ଏ ସବୁକୁ |
| କରଣ | ଏଥିରେ | ଏ ସବୁଥିରେ |
| ସମ୍ପ୍ରଦାନ | ଇହାକୁ ବା ଏହାକୁ | ଏ ସବୁକୁ |
| ଅପାଦାନ | ଏଥିରୁ | ଏ ସବୁଥିରୁ |
| ଅଧିକରଣ | ଏଥିରେ | ଏ ସବୁରେ |
| ସମ୍ବନ୍ଧ | ଏଥିର | ଏ ସବୁର |

## ଯେ ଶବ୍ଦ ।

### ପ୍ରାଣିବାଚକରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ଯେ | ଯେଉଁମାନେ |
| କର୍ମ | ଯାହାକୁ | ଯେଉଁମାନଙ୍କୁ |
| କରଣ | ଯାହାଦ୍ୱାରା | ଯେଉଁମାନଙ୍କ ଦ୍ୱାରା |
| ସମ୍ପ୍ରଦାନ | ଯାହାକୁ | ଯେଉଁମାନଙ୍କୁ |
| ଅପାଦାନ | ଯାହାଠାରୁ | ଯେଉଁମାନଙ୍କଠାରୁ |
| ଅଧିକରଣ | ଯାହାଠାରେ | ଯେଉଁମାନଙ୍କଠାରେ |
| ସମ୍ବନ୍ଧ | ଯାହାର | ଯେଉଁମାନଙ୍କର |

## ଯେ ଶବ୍ଦ ।

### ଅପ୍ରାଣିବାଚକରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | ଯାହା | ଯେ ସବୁ |

| | ଏକବଚନ | ବହୁବଚନ |
|---|---|---|
| କର୍ମ | ଯାହାକୁ | ଯେ ସବୁକୁ |
| କରଣ | ଯହିଁରେ | ଯେ ସବୁରେ |
| ସମ୍ପ୍ରଦାନ | ଯାହାକୁ | ଯେ ସବୁକୁ |
| ଅପାଦାନ | ଯହିଁରୁ | ଯେ ସବୁରୁ |
| ଅଧିକରଣ | ଯହିଁରେ | ଯେ ସବୁରେ |
| ସମ୍ବନ୍ଧ | ଯହିଁର | ଯେ ସବୁର |

କଏ ଶବ୍ଦ ।

ଅମାନ୍ୟାର୍ଥରେ ବା।

ସାଧାରଣରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | କଏ, କେ | କେଉଁ ମାନେ |
| କର୍ମ | କାହାକୁ, କାକୁ | କେଉଁ ମାନଙ୍କୁ |
| କରଣ | କାଦ୍ୱାରା, କାହାଦ୍ୱାରା | କେଉଁ ମାନଙ୍କଦ୍ୱାରା |
| ସମ୍ପ୍ରଦାନ | କାକୁ, କାହାକୁ | କେଉଁ ମାନଙ୍କୁ |
| ଅପାଦାନ | କାଠାରୁ, କାହାଠାରୁ | କେଉଁ ମାନଙ୍କଠାରୁ |
| ଅଧିକରଣ | କାଠାରେ, କାହାଠାରେ | କେଉଁ ମାନଙ୍କଠାରେ |
| ସମ୍ବନ୍ଧ | କାର, କାହାର, କାହିଁର | କେଉଁମାନଙ୍କର |

କେହି ଶବ୍ଦ ।

ସାଧାରଣରେ ।

| | ଏକବଚନ | ବହୁବଚନ |
|---|---|---|
| କର୍ତ୍ତା | କେହି | କେହି୨ |
| କର୍ମ | କାହାରିକୁ | କାହାରି୨କୁ |

| | ଏକବଚନ | ବହୁବଚନ |
|---|---|---|
| କରଣ | କାହାରଦ୍ୱାରା | କାହାର ୨ ଦ୍ୱାରା |
| ସମ୍ପ୍ରଦାନ | କାହାରକୁ | କାହାର ୨ କୁ |
| ଅପାଦାନ | କାହାରଠାରୁ | କାହାର ୨ ଠାରୁ |
| ଅଧିକରଣ | କାହାରଠାରେ | କାହାର ୨ ଠାରେ |
| ସମ୍ବନ୍ଧ | କାହାରର | କାହାର ୨ ର |

ପ୍ରଶ୍ନ ।

କାରକର ଲକ୍ଷଣ କହ । କାରକ କେତେ ଗୋଟି ? ପ୍ରତ୍ୟେକର ନାମ କହ । ସମ୍ବନ୍ଧ କାରକ ନ ହେବାର ହେତୁ କି ? ଅଧିକରଣର ସୂତ୍ର କହି ତିନିଗୋଟି ଉଦାହରଣ ଦିଅ । ବିଭକ୍ତିର ଚିହ୍ନ କହ । ସମ୍ବୋଧନ କାହାକୁ କହନ୍ତି ? ତାହା କାରକ ନୁହେ କାହିଁକି ? ମାନ୍ୟାର୍ଥରେ କେଉଁ ୨ ସମ୍ବୋଧନ ପଦ ପ୍ରୟୋଗ ହୁଏ ? ସର୍ବନାମରେ ସମ୍ବୋଧନ ଅଛି କି ନାହିଁ ? ପୁରୁଷ କାହାକୁ କହନ୍ତି ? ପୁରୁଷ କେତେ ଗୋଟି ? ପ୍ରତ୍ୟେକର ନାମ କହ । ରାଜା, ମୁ, ସ୍ୱାମୀ, ଗୁରୁ ଓ ପିତା ଶବ୍ଦ ମାନ୍ୟାର୍ଥରେ ଏବଂ ମନୁଷ୍ୟ, ଯୁବତୀ, ଆପଣା, ତୁ ଓ ସେ ଶବ୍ଦକୁ ଅମାନ୍ୟାର୍ଥରେ ରୂପ କର ।

ନିମ୍ନଲିଖିତ ପଦ ସବୁର, କାରକ, ପୁରୁଷ ଓ ବଚନ କହ ।

ଗୋପାଳକୁ । ଆମ୍ଭର । ପରମେଶ୍ୱର । ରାମଦ୍ୱାରା । ଅମ୍ଭଠାରେ । ହେ ପିତଃ । ତୋତେ । ଦେବୀଙ୍କୁ । କେଉଁମାନେ । ଆପଣ । କାହାକୁ । ସର୍ବତର । ମୋହର । ଆପଣାକୁ । ବାଳକାମାନଙ୍କଠାରେ । ଗୃହରେ । ଯେଉଁମାନଙ୍କର । ଯାହାକୁ । ସେ । ତୁମ୍ଭେ । କେହି । ମୋତେ । ତାହାର । ସେମାନଙ୍କୁ । ଯେଉଁମାନେ । ଆସେ ।

ମୂ , ପର୍ବତ, ଆପଣ, ଜ୍ୟେଷ୍ଠ, ମାତା ଶବ୍ଦ କରଣ ଓ ଅଧିକରଣର ବହୁବଚନରେ କଣ ହେବ ?

ନିମ୍ନଲିଖିତ ଶବ୍ଦମାନଙ୍କର ସମ୍ବୋଧନ କର ।

ବାଳା, ଗୁଣବତୀ, ବଧୂ, ଦେବୀ, ଗୁରୁ ।

## ବିଶେଷଣ ।

୬୦ । ଯେଉଁ ପଦ ଅନ୍ୟ ପଦକୁ ବିଶେଷ କରି ଦିଏ ଏବଂ ବିଶେଷ୍ୟ ପଦକୁ ନ ପାଇଲେ ନିଜେ ଅର୍ଥ ପ୍ରକାଶ କରି ନ ପାରେ ତାହାକୁ ବିଶେଷଣ କହନ୍ତି । ଯଥା; ସୁନ୍ଦର ପୁଷ୍ପ, କୋମଳ ପଦ୍ମ, କେବଳ ସୁନ୍ଦର ଓ କୋମଳ କହିଲେ କିଏ କୋମଳ, କିଏ ସୁନ୍ଦର ଏପରି ବିଶେଷ୍ୟ ପଦକୁ ଅପେକ୍ଷା କରିବାରୁ ବିଶେଷଣ ହେଲା । ବିଶେଷଣ ଦୁଇ ପ୍ରକାର । ଯଥା; ବିଶେଷ୍ୟର ବିଶେଷଣ, ବିଶେଷଣର ବିଶେଷଣ । ଯେ ବିଶେଷ୍ୟ ପଦକୁ ବିଶେଷ କରଇ ସେ ବିଶେଷ୍ୟର ବିଶେଷଣ । ତାହା ଅନେକ ପ୍ରକାର, ତନ୍ମଧ୍ୟରୁ ଛଅ ପ୍ରକାର ପ୍ରଧାନ । ଯଥା; ଗୁଣବାଚକ ବିଶେଷଣ, ନାମବାଚକ ବିଶେଷଣ, କ୍ରିୟାବାଚକ ବିଶେଷଣ, ପରିମାଣ ବାଚକ ବିଶେଷଣ, ସଂଖ୍ୟାବାଚକ ବିଶେଷଣ, ଆଉ ସର୍ବନାମୀୟ ବିଶେଷଣ ।

୬୧ । ଯାହାଦ୍ୱାରା ଗୁଣ ଜଣାଯାଏ ସେ ଗୁଣବାଚକ ବିଶେଷଣ । ଯଥା; ଶୁକ୍ଳ, ପୀତ, ନୀଳ, ଲୋହିତ ଇତ୍ୟାଦି ।

୬୨ । ଯାହାଦ୍ୱାରା ସଂଜ୍ଞା, ଅର୍ଥାତ୍ ନାମ ମାତ୍ର ଜଣାଯାଏ ତାହାକୁ ନାମବାଚକ ବିଶେଷଣ କହନ୍ତି । ଯଥା; ରାୟପୁରୀ ଧୋତି, କଟକୀ ସେର , ସମ୍ବଲପୁରୀ ଚାଉଳ ଇତ୍ୟାଦି ।

୬୩ । ଯେଉଁ ପଦ କ୍ରିୟାର ଅର୍ଥ ପ୍ରକାଶ କରି ବିଶେଷଣ ହୁଏ ତାହାକୁ କ୍ରିୟାବାଚକ ବିଶେଷଣ କହନ୍ତି । ଯଥା; ସ୍ଥିତ, କୃତ, ବାଚକ, ମାରିଥିବା, ଖାଉଥିଲା ଇତ୍ୟାଦି ।

୬୪ । ଯାହାଦ୍ୱାରା ପରିମାଣ ଜଣାଯାଏ ତାହା ପରିମାଣବାଚକ ବିଶେଷଣ । ଯଥା; ସେରେ, ମାଣେ, ମହଣେ, ଏତେ, ତେତେ, ଯେତେ ଇତ୍ୟାଦି ।

୬୫ । ଯାହାଦ୍ୱାରା ସଂଖ୍ୟା ଜଣାଯାଏ ସେ ସଂଖ୍ୟାବାଚକ ବିଶେଷଣ; ତାହା ଦୁଇପ୍ରକାର । ସଂଖ୍ୟାନୁସାରୀ ଓ କ୍ରମାନୁସାରୀ । କ୍ରମେ ଉଦାହରଣ । ଯଥା; ଏକ, ଦୁଇ, ତିନି, ଶଏ, ହଜାର, ଆଉ, ପ୍ରଥମ, ଦ୍ୱିତୀୟ, ତୃତୀୟ, ଇତ୍ୟାଦି ।

୬୭ । ଯେଉଁ ସର୍ବନାମ ବିଶେଷ୍ୟର ପୂର୍ବରେ ରହି ବିଶେଷଣ ହୁଏ ତାହାକୁ ସର୍ବନାମୀୟ ବିଶେଷଣ କହି, ତାହା ପାଞ୍ଚ ପ୍ରକାର । ଯଥା; ନାମବାଚକ, ସମ୍ବନ୍ଧବାଚକ, ପ୍ରଶ୍ନବାଚକ, ନିଶ୍ଚୟବାଚକ ଓ ଅନିଶ୍ଚୟବାଚକ ବିଶେଷଣ । କ୍ରମରେ ଉଦାହରଣ । ସର୍ବ

ନାମବାଚକ ସର୍ବନାମୀୟ ବିଶେଷଣ । ଯଥା; ଆଉ, ଆଉ ୨, ସବୁ, ସକଳ, ସମସ୍ତ, ଅନ୍ୟ, ଅନ୍ୟାନ୍ୟ, ଇତର, ପର, ଏକ, ପରସ୍ପର ଇତ୍ୟାଦି ।

ସମ୍ବନ୍ଧବାଚକ ସର୍ବନାମୀୟ ବିଶେଷଣ । ଯଥା; ଯେ, ଯେଉଁ ।

ପ୍ରଶ୍ନବାଚକ ସର୍ବନାମୀୟ ବିଶେଷଣ । ଯଥା; କି, କାହ ଇତ୍ୟାଦି ।

ନିଶ୍ଚୟବାଚକ ସର୍ବନାମୀୟ ବିଶେଷଣ । ଯଥା; ଏ, ଏହି, ସେ, ସେଇ, ସେହି ଇତ୍ୟାଦି ।

ଅନିଶ୍ଚୟବାଚକ ସର୍ବନାମୀୟ ବିଶେଷଣ । ଯଥା; କେଉଁ, କୌଣସି ଇତ୍ୟାଦି ।

### ବିଶେଷଣର ବିଶେଷଣ ।

୬୭ । ଯାହାଦ୍ୱାରା ବିଶେଷଣ ପଦକୁ ବିଶେଷ କରାଯାଏ ତାହାକୁ ବିଶେଷଣୀୟ ବିଶେଷଣ କହନ୍ତି । ଯଥା; ବଡ ଧନୀ, ଏଠାରେ ବଡ଼ ପଦ ଦ୍ୱାରା ଧନୀ, ଏହି ବିଶେଷଣ ପଦକୁ ବିଶେଷ କରାଯିବାରୁ ବଡ

ବିଶେଷଣୀୟ ବିଶେଷଣ ହେଲା । ଯଥା; ନିତାନ୍ତ ମନ୍ଦ, ଅତିଶୟ ଭଲ ଓ ଅତ୍ୟନ୍ତ ସୁନ୍ଦର ଇତ୍ୟାଦି ।

ପ୍ରଶ୍ନ ।

ବିଶେଷଣ କାହାକୁ କହି ? ତାହା କେତେ ପ୍ରକାର ? ବିଶେଷ୍ୟର ବିଶେଷଣ ଓ ବିଶେଷଣର ବିଶେଷଣ ଚିହ୍ନି କହି ପ୍ରତ୍ୟେକ ସ୍ଥଳରୁ ଦୁଇ୨ ଉଦାହରଣ ଦିଅ ?

ନିମ୍ନଲିଖିତ ପଦଗୁଡ଼ିକ କେଉଁ ବିଶେଷଣ ଅନ୍ତର୍ଗତ ଅଟଇ ? ପ୍ରତ୍ୟେକରେ ବିଶେଷ୍ୟ ଯୋଗ କରି କହ । ଯଥା; ଏତେ, ବୁଦ୍ଧିମାନ୍, ଲାଲ, କୃତ, ଶୋଇଥିଲା, ରାଜ୍ୟସ୍ଥ, ଅଷ୍ଟମ ହଜାର, ଇତର, ଅନ୍ୟ, ଏହି, କେଉଁ, କଳ, ଯେଉଁ ଇତ୍ୟାଦି ।

କ୍ରିୟା ବିଭାଗ ।

୬୮ । ଯହିଁରୁ କିଛି ହେବା, କରିବା ଇତ୍ୟାଦି ଅର୍ଥ ବୁଝାଏ ତାହାକୁ କ୍ରିୟା ବୋଲାଯାଏ । ଯଥା; କରିବା, ଖାଇବା, ନେବା, ଆଣିବା, ବସିବା, ଉଠିବା, ହେବା, ଥିବା ଇତ୍ୟାଦି ।

୬୯ । କ୍ରିୟା ଦୁଇପ୍ରକାର ସକର୍ମକ ଓ ଅକର୍ମକ ।

୭୦ । ଯେଉଁ କ୍ରିୟା କର୍ମ ଅବଶ୍ୟକ କରେ ତାହାକୁ ସକର୍ମକ ବୋଲାଯାଏ । ଯଥା; ବାଳକ ଅନ୍ନ ଭୋଜନ କରୁଅଛି, ସେ ପୁସ୍ତକ ଆଣିଲା, ରାମ ଗୃହ ନିର୍ମାଣ କରିବ । ଏଠାରେ ଭୋଜନ କରୁଅଛି, ଆଣିଲା, ଓ ନିର୍ମାଣ କରିବ କ୍ରିୟା କର୍ମ ଅବଶ୍ୟକ କରିବାରୁ ସକର୍ମକ ହେଲା ।

୭୧ । ସକର୍ମକ କ୍ରିୟା ଆଣିବା, ଖାଇବା, ମାଗିବା, ଲେଖିବା, ପିଇବା, ନେବା, ପଢ଼ିବା, ବଜାଇବା, ଧରିବା, ଡାକିବା, ପଠାଇବା, ବନ୍ଦ କରିବା, ରଖିବା, ପକାଇବା, ଚରିବା ଇତ୍ୟାଦି ।

୭୨ । ସକର୍ମକ କ୍ରିୟା ମଧ୍ୟରେ କହିବା, ପଚାରିବା, ଶିକ୍ଷା ଦେବା,

ବୁଝାଇବା, ବୋଲିବା, ନେବା, ଇତ୍ୟାଦି କ୍ରିୟା ଦୁଇଗୋଟି କର୍ମର ଆବଶ୍ୟକତା ରଖୁଥିବାରୁ ଦ୍ୱିକର୍ମକ ଅଟେ । ଦ୍ୱିକର୍ମକ କ୍ରିୟାର ଦୁଇଗୋଟି କର୍ମ ଥାଏ । ଗୋଟିକୁ ମୁଖ୍ୟକର୍ମ, ଅନ୍ୟଟିକୁ ଗୌଣ-କର୍ମ କହନ୍ତି ।

୭୩ । ଯେଉଁ କ୍ରିୟା କର୍ମ ଆବଶ୍ୟକ ନ କରେ ତାହାକୁ ଅକର୍ମକ କ୍ରିୟା କହନ୍ତି । ଯଥା; ବାଳକ ଖେଳୁଅଛି, ରାମ ଉଠୁଅଛି, ଗୋପାଳ ଶୟନ କରୁଅଛି; ଏଠାରେ ଖେଳୁଅଛି, ଉଠୁଅଛି, ଶୟନ କରୁଅଛି, କର୍ମର ଆବଶ୍ୟକତା ରଖୁ ନ ଥିବାରୁ ଅକର୍ମକ କ୍ରିୟା ହେଲା ।

୭୪ । ଅକର୍ମକ କ୍ରିୟା—ରହିବା, ଥିବା, ହେବା, ଉଠିବା, ବସିବା, ଶୋଇବା, ଛିଡ଼ା ହେବା, ବଢ଼ିବା, ଖେଳିବା, ନାଚିବା, ମରିବା, ବଞ୍ଚିବା, ହସିବା, ଠିଆ ହେବା, ପଡ଼ିବା ଇତ୍ୟାଦି ।

୭୫ । ଉପରୋକ୍ତ କ୍ରିୟା ସମାପିକା, ଅସମାପିକା ନାମକ ଦୁଇ ଶ୍ରେଣୀରେ ବିଭକ୍ତ ।

୭୬ । ଯେଉଁ କ୍ରିୟା ପ୍ରୟୋଗ କଲେ ବାକ୍ୟର ସମାପ୍ତି ହୁଏ ତାହାକୁ ସମାପିକା କ୍ରିୟା ବୋଲାଯାଏ । ଯଥା; ଗୋପାଳ ପଢ଼ୁଅଛି, ଏଠାରେ, ପଢ଼ୁଅଛି କ୍ରିୟା ସମାପିକା ଅଟେ ।

୭୭ । ଯେଉଁ କ୍ରିୟା ପ୍ରୟୋଗ କଲେ ବାକ୍ୟ ସମାପ୍ତ ହୁଏ ନାହିଁ ତାହାକୁ ଅସମାପିକା କ୍ରିୟା କହନ୍ତି । ଯଥା; ସେ ଖାଇବାକୁ ଗଲା, ମୁଁ ଖାଇକରି ଯିବି, ରାମ ଖାଇଲେ ଯିବ; ଏଠାରେ ଖାଇବାକୁ, ଖାଇକରି, ଖାଇଲେ ଅସମାପିକା କ୍ରିୟା ।

ପ୍ରଶ୍ନ ।

କ୍ରିୟାର ଲକ୍ଷଣ କ ? ଅକର୍ମକ ଓ ସକର୍ମକ କ୍ରିୟା ମଧ୍ୟରେ ପ୍ରଭେଦ କଣ ? ଅସମାପିକା କ୍ରିୟା କାହାକୁ କହନ୍ତି ? ପାଞ୍ଚଗୋଟି ଅକର୍ମକ ଓ ଚାରିଗୋଟି ଦ୍ୱିକର୍ମକ କ୍ରିୟାର ଉଦାହରଣ ଦିଅ ?

ନିମ୍ନଲିଖିତ କ୍ରିୟା ସବୁର କାଳ କହ ।

କଲା, ବସିବ । ପ୍ରଶ୍ନ କରୁଅଛ । ଖାଇଲା, ଯିବ । ନେଇଥିଲା । ମାରୁଥିଲା । ପଢ଼ାଇଲା । ଲେଖିବ । ଉଠିବ । ମାଗିଲା । ହସିବ ।

ବାଚ୍ୟ ।

୭୮ । ଯହିଁରୁ କର୍ତ୍ତା ସ୍ୱୟଂ କରୁଥିବା ବା ଅନ୍ୟଦ୍ୱାରା କରାଯାଇଥିବା ବୋଧ ହୁଏ ତାହାକୁ ବାଚ୍ୟ କହନ୍ତି । ବାଚ୍ୟ ଦୁଇ ପ୍ରକାର ଅର୍ଥାତ୍ କର୍ତ୍ତୃବାଚ୍ୟ ଓ କର୍ମବାଚ୍ୟ ।

୭୯ । ପ୍ରଥମାନ୍ତ କର୍ତ୍ତାଦ୍ୱାରା ଯେଉଁ କ୍ରିୟାର କାର୍ଯ୍ୟ କରାଯାଏ ସେହି କ୍ରିୟାର ବାଚ୍ୟ କର୍ତ୍ତୃବାଚ୍ୟ ଅଟେ । ଯଥା; ବାଳକ ଅନ୍ନ ଭୋଜନ କରୁଅଛି, ରାମ ପାଠ ପଢ଼ୁଅଛି, ଶିକ୍ଷକ ଛାତ୍ରମାନଙ୍କୁ ବ୍ୟାକରଣ ଶିକ୍ଷା ଦେଉଅଛନ୍ତି । ଏଠାରେ ଭୋଜନ କରୁଅଛି, ପଢ଼ୁଅଛି, ଶିକ୍ଷା ଦେଉଅଛନ୍ତି, କର୍ତ୍ତୃବାଚ୍ୟ ଅଟେ ।

୮୦ । ତୃତୀୟାନ୍ତ କର୍ତ୍ତୃଦ୍ୱାରା ଯେଉଁ କ୍ରିୟାର କାର୍ଯ୍ୟ କରାଯାଏ ସେହି କ୍ରିୟା କର୍ମବାଚ୍ୟର କ୍ରିୟା ଅଟେ । ଯଥା; ବାଳକଦ୍ୱାରା ଅନ୍ନ ଭୁକ୍ତ ହେଉଅଛି, ରାମଦ୍ୱାରା ପାଠ ପଢ଼ା ଯାଉଅଛି, ଶିକ୍ଷକଙ୍କ ଦ୍ୱାରା ଛାତ୍ରମାନେ ବ୍ୟାକରଣରେ ଶିକ୍ଷିତ ହେଉଅଛନ୍ତି, ଏଠାରେ ଭୁକ୍ତ ହେଉଅଛି, ପଢ଼ା ଯାଉଅଛି, ଶିକ୍ଷିତ ହେଉଅଛନ୍ତି କର୍ମବାଚ୍ୟ ଅଟେ ।

୮୧ । କର୍ତ୍ତୃବାଚ୍ୟ କ୍ରିୟାକୁ କର୍ମବାଚ୍ୟ କଲେ କର୍ମଠାରେ ପ୍ରଥମା ଓ କର୍ତ୍ତାଠାରେ ତୃତୀୟା ବିଭକ୍ତି ରଖି ଓ କ୍ରିୟାରେ 'ଆ' କାର ଯୋଗ କରି 'ହେବା' ଏବଂ 'ଯିବା' ପ୍ରୟୋଗ କରି ରୂପ କରିବାକୁ ହେବ । ଯଥା; କର୍ତ୍ତୃବାଚ୍ୟରେ ସେ ଘାସ କାଟିଲା, କର୍ମବାଚ୍ୟରେ ତାହାଦ୍ୱାରା ଘାସ କଟା ହେଲା ଇତ୍ୟାଦି ।

ନିୟମ ।

୮୨ । କାର୍ଯ୍ୟର ରୀତିକୁ ନିୟମ ବୋଲାଯାଏ, ନିୟମ ଗୁଡ଼

ପ୍ରକାର । ଯଥା; ସ୍ୱାର୍ଥନିଯ୍ୟମ, ଶକ୍ତ୍ୟର୍ଥ ନିଯ୍ୟମ, ଅଶଂସାର୍ଥ ନିଯ୍ୟମ ଓ ଅନୁମତ୍ୟର୍ଥ ନିଯ୍ୟମ ।

୮୩ । ଯେଉଁ ନିଯ୍ୟମରୁ କ୍ରିୟାର ସାଧାରଣ ଅବସ୍ଥା ଜଣା ପଡ଼େ ବା ଯହିଁରେ କ୍ରିୟା ପ୍ରଶ୍ନରେ ପ୍ରଯୋଗ ହୋଇଥାଏ ତାହାକୁ ସ୍ୱାର୍ଥ ନିଯ୍ୟମ କହନ୍ତି । ଯଥା; ବାଳକ କ୍ଷେତ ଭାଙ୍ଗିଲା, ସେ ଗୃହକୁ ଗଲା, ତୁମ୍ଭେ କି ଏହା କଲ ? ଏଠାରେ ଭାଙ୍ଗିଲା, ଗଲା, ଏବଂ କଲ ସ୍ୱାର୍ଥ ନିଯ୍ୟମ ।

୮୪ । ଯେଉଁ ନିଯ୍ୟମରୁ କର୍ତ୍ତାର ଶକ୍ତି ବୋଧ ହୁଏ ତାହାକୁ ଶକ୍ତ୍ୟର୍ଥ ନିଯ୍ୟମ ବୋଲାଯାଏ, ଏଥିର ଚିହ୍ନ "ପାରେ" । ଯଥା; ସେ ପଢ଼ିପାରେ, ମୁଁ ଲେଖିପାରେଁ, ତୁମ୍ଭେ କହିପାର ; ଏଠାରେ ପଢ଼ିପାରେ ଲେଖିପାରେଁ, କହିପାର କ୍ରିୟା ଶକ୍ତ୍ୟର୍ଥ ନିଯ୍ୟମ ଅଟେ ।

୮୫ । ଯେଉଁ ନିଯ୍ୟମରେ କ୍ରିୟାର ସନ୍ଦେହ ଜଣାଯାଏ, ତାହାକୁ ଅଶଂସାର୍ଥ ନିଯ୍ୟମ କହନ୍ତି; ଏଥିର ଚିହ୍ନ "ଯଦି" "ଯଦ୍ୟପି" ଇତ୍ୟାଦି । ଯଥା; ଯଦି ମୁଁ ଯାଏଁ, ଯେବେ ସେ ଆସିବ, ଯଦ୍ୟପି ଏହା ତୁମ୍ଭେ କରିବ; ଏଠାରେ ଯାଏଁ, ଆସିବ ଓ କରିବ କ୍ରିୟା ଅଶଂସାର୍ଥ ନିଯ୍ୟମ ।

୮୬ । ଯେଉଁ କ୍ରିୟାରେ ଅନୁମତି ଦିଆଯାଏ ବା ପ୍ରାର୍ଥନା କରାଯାଏ, ତାହାକୁ ଅନୁମତ୍ୟର୍ଥ ନିଯ୍ୟମ କହନ୍ତି, ଏଥିରେ କର୍ତ୍ତା ପ୍ରାୟ ଲୋପ ଥାଏ । ଯଥା; ଫୁଲ ନିଅ, ମୋତେ କ୍ଷମା କର, ପଢ଼ାରେ ଦତ୍ତଚିତ୍ତ ହୁଅ; ଏଠାରେ ନିଅ, କ୍ଷମା କର ଓ ଦତ୍ତଚିତ୍ତ ହୁଅ କ୍ରିୟା ଅନୁମତ୍ୟର୍ଥ ନିଯ୍ୟମ ଅଟେ ।

ପ୍ରଶ୍ନ ।

ବାଚ୍ୟ କାହାକୁ କହନ୍ତି ? ତାହା କେତେ ପ୍ରକାର ? କର୍ମବା

ତ୍ୟର ଗୋଟିଏ ଉଦାହରଣ ଦିଅ । ନିୟମ କାହାକୁ କହନ୍ତି ? ନିୟମ କେତେ ପ୍ରକାର ? ପ୍ରତ୍ୟେକ ନିୟମର ସୂତ୍ର କହ । କେଉଁ ନିୟମର ଚିହ୍ନ ପାଏ ? କେଉଁ ନିୟମରେ କର୍ତ୍ତା ପ୍ରାପ୍ତ ଲୋପ ଥାଏ ?

ଅଧଃପ୍ରକଟିତ ବାକ୍ୟମାନଙ୍କରେ କ୍ରିୟାର ବାଚ୍ୟ ଓ ନିୟମ କହ ।

କିଏ ବଜାରକୁ ଯାଉଅଛୁ ? ସେମାନେ ଗୀତ ଗାନ କରୁଅଛନ୍ତି । ବିରାଡ଼ି ମାଛ ଖାଇଲା । ବ୍ରାହ୍ମଣ ଓ କରଣ କୁଳରେ ବାଲ୍ୟବିବାହ ଅମଙ୍ଗଳଜନକ ଅଟେ । ଏହି ବାଳକ ସେହି ଦୋକାନରେ କଲମ, କାଗଜ ବିକ୍ରୟ କରେ । ମୁ ଏହି କାର୍ଯ୍ୟକୁ ଏକ ଘଣ୍ଟାରେ କରି ପାରେଁ । ବାଳକ ସ୍କୁଲ ପର୍ଯ୍ୟନ୍ତ ଦୌଡ଼ିପାରେ । ସେମାନେ ବିଦ୍ୟାଳୟରୁ ଆସୁଅଛନ୍ତି । ରାମର ପିତା କି ଗୃହରେ ଅଛନ୍ତି ? ତୁ ଅଗରେ ଚିହ୍ନାଇ ରଖ ? ଯଦି ସେ ପାଠ ପଢ଼ିବ ତେବେ ସେ ସୁଖୀ ହେବ । କୋଲମ୍ବସ ଆମେରିକାକୁ ଆବିଷ୍କାର କରିଅଛନ୍ତି । ତୁମ୍ଭେ ଏଠାକୁ କେବେ ଆସିଲ ? ତାହାର ଅପରାଧ କ୍ଷମା କର । ସେମାନେ ଅତି ମୂର୍ଖ ଅଟନ୍ତି । ଆପଣା ୨ ସମୟ ବୃଥାରେ କ୍ଷେପଣ ନ କର । ମୁ ଅନ୍ନ ଭୋଜନ କରୁଅଛୁ । ସେ କି ତୁମ୍ଭକୁ ଦଣ୍ଡ ଦେଲେ ? ପଢ଼ିବାରେ ହେଳା କର ନାହିଁ । ହେ ପ୍ରଭୋ, ମତେ ରକ୍ଷା କର ।

## କାଳ ।

୮୭ । ଯେଉଁ ସମୟରେ କ୍ରିୟା ଘଟଇ ସେ ସମୟକୁ କାଳ ବୋଲନ୍ତି, କାଳ ତିନି ପ୍ରକାର ଅର୍ଥାତ୍ ଭୂତ କାଳ, ବର୍ତ୍ତମାନ କାଳ ଓ ଭବିଷ୍ୟତ୍ କାଳ ।

୮୮ । ଯେଉଁ କ୍ରିୟା ଗତ ହୋଇଅଛି ତାହାର ସମୟକୁ ଭୂତ କାଳ କହନ୍ତି । ଯଥା; ସେ ଆଣିଅଛି, ତୁମ୍ଭେ ଆସିଥିଲ, ମୁଁ ବସିଥିଲି; ଏଠାରେ ଆଣିଅଛି, ଆସିଥିଲ, ବସିଥିଲି, ଭୂତ କାଳର କ୍ରିୟା ଅଟେ । ଭୂତକାଳ ଛଅ ପ୍ରକାର । ଯଥା; ଅଦ୍ୟତନ, ଅନଦ୍ୟତନ, ପରୋକ୍ଷ, କ୍ରିୟାପ୍ରବୃତ୍ତି, ଆନୁମାନିକ ଓ ସମ୍ଭାବ୍ୟ ।

୮୯ । ଯେଉଁ କ୍ରିୟା ଚାଲୁଅଛି ତାହାର ସମୟକୁ ବର୍ତ୍ତମାନ କହନ୍ତି । ଯଥା ; ସେ ଯାଉଅଛି, ମୁ ଖାଉଅଛି, ତୁମ୍ଭେ ପଢୁଅଛ; ଏଠାରେ ଯାଉଅଛି, ଖାଉଅଛି ଓ ପଢୁଅଛ ବର୍ତ୍ତମାନ କାଳର କ୍ରିୟା ଅଟେ । ତାହା ଚାରି ପ୍ରକାର । ଯଥା; ବିଶୁଦ୍ଧ, ନିତ୍ୟପ୍ରବୃତ୍ତ, ଅନୁମାନିକ ଓ ସମ୍ଭାବ୍ୟ ।

୯୦ । ଯେଉଁ କ୍ରିୟା ଆଗକୁ ହେବ ତାହାର କାଳକୁ ଭବିଷ୍ୟତ କାଳ ବୋଲାଯାଏ । ଯଥା ସେ କରବ, ତୁମ୍ଭେ ଖାଇବ, ମୁ ନେବି; ଏଠାରେ କରବ, ଖାଇବ ଓ ନେବି ଭବିଷ୍ୟତ୍କାଳର କ୍ରିୟା ଅଟେ । ତାହା ଦୁଇ ପ୍ରକାର । ଯଥା; ଶୁଦ୍ଧ ଓ ସମ୍ଭାବ୍ୟ ।

କର୍ତ୍ତୃବାଚ୍ୟ ।

ସ୍ୱାର୍ଥ ନିୟମ ।

ଖାଇବା କ୍ରିୟା ରୂପ ।

ଭୂତକାଳ ।

| ପୁରୁଷ | ଅଦ୍ୟତନଭୂତ ଚିହ୍ନ "ଇଲା" ବା "ଲା" | ଅନଦ୍ୟତନଭୂତ ଚିହ୍ନ "ଇଅଛ" | ପରୋକ୍ଷ ଭୂତ ଚିହ୍ନ "ଇଥିଲା" | ନିତ୍ୟପ୍ରବୃତ୍ତ ଭୂତ ଚିହ୍ନ "ଉଥିଲା" | ଆନୁମାନିକ ଭୂତ ଚିହ୍ନ "ଇଥିବ" | ସମ୍ଭାବ୍ୟ ଭୂତ ଚିହ୍ନ "ଇଥାନ୍ତା" |
|---|---|---|---|---|---|---|
| ମୁ | ଖାଇଲି | ଖାଇଅଛି | ଖାଇଥିଲି | ଖାଉଥିଲି | ଖାଇଥିବି | ଖାଇଥାନ୍ତି |
| ଆମ୍ଭେମାନେ | ଖାଇଲୁଁ | ଖାଇଅଛୁଁ | ଖାଇଥିଲୁଁ | ଖାଉଥିଲୁଁ | ଖାଇଥିବୁଁ | ଖାଇଥାନ୍ତୁ |
| ତୁ | ଖାଇଲୁ | ଖାଇଅଛୁ | ଖାଇଥିଲୁ | ଖାଉଥିଲୁ | ଖାଇଥିବୁ | ଖାଇଥାନ୍ତୁ |
| ତୁମ୍ଭେମାନେ | ଖାଇଲ | ଖାଇଅଛ | ଖାଇଥିଲ | ଖାଉଥିଲ | ଖାଇଥିବ | ଖାଇଥାନ୍ତ |
| ସେ | ଖାଇଲା | ଖାଇଅଛି | ଖାଇଥିଲା | ଖାଉଥିଲା | ଖାଇଥିବ | ଖାଇଥାନ୍ତା |
| ସେମାନେ | ଖାଇଲେ | ଖାଇଅଛନ୍ତି | ଖାଇଥିଲେ | ଖାଉଥିଲେ | ଖାଇଥିବେ | ଖାଇଥାନ୍ତେ |

## ବର୍ତ୍ତମାନ କାଳ ।

| ପୁରୁଷ | ବିଶୁଦ୍ଧ ବର୍ତ୍ତମାନ ଚିହ୍ନ "ଉଅଛି" | ନିତ୍ୟ ପ୍ରବୃତ୍ତ ବର୍ତ୍ତମାନ ଚିହ୍ନ "ଅଇ" "ଏ" | ଅନୁମାନିକ ବର୍ତ୍ତମାନ ଚିହ୍ନ "ଉଥିବ" | ସମ୍ଭାବ୍ୟ ବର୍ତ୍ତମାନ ଚିହ୍ନ "ଉଥାନ୍ତା" |
|---|---|---|---|---|
| ମୁଁ | ଖାଉଅଛି | ଖାଏଁ | ଖାଉଥିବି | ଖାଉଥାନ୍ତି |
| ଆମ୍ଭେମାନେ | ଖାଉଅଛୁଁ | ଖାଉଁ | ଖାଉଥିବୁଁ | ଖାଉଥାନ୍ତୁ |
| ତୁ | ଖାଉଅଛୁ | ଖାଉ | ଖାଉଥିବୁ | ଖାଉଥାନ୍ତୁ |
| ତୁମ୍ଭେମାନେ | ଖାଉଅଛ | ଖାଅ | ଖାଉଥିବ | ଖାଉଥାନ୍ତ |
| ସେ | ଖାଉଅଛି | ଖାଏ ବା ଖାଅଇ | ଖାଉଥିବ | ଖାଉଥାନ୍ତା |
| ସେମାନେ | ଖାଉଅଛନ୍ତି | ଖାଆନ୍ତି | ଖାଉଥିବେ | ଖାଉଥାନ୍ତେ |

## ଭବିଷ୍ୟତ୍ କାଳ ।

| ପୁରୁଷ । | ବିଶୁଦ୍ଧ ଭବିଷ୍ୟତ୍ ଚିହ୍ନ "ଇବ" | ସମ୍ଭାବ୍ୟ ଭବିଷ୍ୟତ୍ ଚିହ୍ନ "ଅନ୍ତା" |
|---|---|---|
| ମୁଁ | ଖାଇବି | ଖାନ୍ତି |
| ଆମ୍ଭେମାନେ | ଖାଇବୁଁ | ଖାନ୍ତୁ |
| ତୁ | ଖାଇବୁ | ଖାନ୍ତୁ |
| ତୁମ୍ଭେମାନେ | ଖାଇବ | ଖାନ୍ତ |
| ସେ | ଖାଇବ | ଖାନ୍ତା |
| ସେମାନେ | ଖାଇବେ | ଖାନ୍ତେ |

ଣିଜ୍ୟର୍ଥ ଓ ଆତ୍ମାର୍ଥ ନିୟମରେ ରୂପ କରିବାକୁ ହେଲେ ତହିଁର ଚିହ୍ନ ଯୋଗ କରି ଏହିରୂପେ କରିବାକୁ ହେବ ।

## ଅନୁମତ୍ୟର୍ଥ ନିୟମ ।

### ନିତ୍ୟପ୍ରବୃତ୍ତ ବର୍ତ୍ତମାନ କାଳ ।

### ଖାଇବା କ୍ରିୟା ।

| ଏକବଚନ | ବହୁବଚନ |
|---|---|
| ମୁଁ ଖାଏଁ ବା ଖାଉଥାଏଁ | ଅମ୍ଭେମାନେ ଖାଉଁ ବା ଖାଉଥାଉଁ |
| ତୁ ଖା ବା ଖାଉଥା | ତୁମ୍ଭେମାନେ ଖାଅ ବା ଖାଉଥାଅ |
| ସେ ଖାଉ ବା ଖାଉଥାଉ | ସେମାନେ ଖାଆନ୍ତୁ ବା ଖାଉଥାନ୍ତୁ |

ଏହି ନିୟମରେ କେବଳ ଗୋଟିଏ କାଳ ଅଛି ।

### ନିଷେଧାର୍ଥ କ୍ରିୟା ।

୯୧ । ଯେଉଁ କ୍ରିୟାରେ ବାକ୍ୟର ଅଭିପ୍ରାୟ ନିଷେଧ ହୁଏ ତାହାକୁ ନିଷେଧାର୍ଥ କ୍ରିୟା କହନ୍ତି । ଯଥା; ସେ ଆସିବ ନାହିଁ, ଏଠାରେ ଆସିବ ନାହିଁ ନିଷେଧାର୍ଥ କ୍ରିୟା ।

୯୨ । ନିଷେଧାର୍ଥ କ୍ରିୟାରେ ନ, ନା, ନାହିଁ ଇତ୍ୟାଦି ପଦ କ୍ରିୟାର ପୂର୍ବରେ ବା ପରରେ ଅଥବା ମଧ୍ୟରେ ସନ୍ନିବେଶିତ କରି ସବୁ କାଳରେ ରୂପ କରାଯାଏ । ଯଥା; ନ କହିବ, ଖାଇ ନ ଥିଲା, କର ନାହିଁ ଇତ୍ୟାଦି ।

### ବିଶୁଦ୍ଧ ବର୍ତ୍ତମାନକାଳ ।

| ଏକବଚନ | ବହୁବଚନ |
|---|---|
| ମୁଁ ଖାଉ ନାହିଁ | ଅମ୍ଭେମାନେ ଖାଉ ନାହୁଁ |
| ତୁ ଖାଉ ନାହୁଁ | ତୁମ୍ଭେମାନେ ଖାଉ ନାହଁ |
| ସେ ଖାଉ ନାହିଁ | ସେମାନେ ଖାଉ ନାହାନ୍ତି |

### ଅନଦ୍ୟତନ ଭୂତକାଳ ।

| ଏକବଚନ | ବହୁବଚନ |
| --- | --- |
| ମୁଁ ଖାଇ ନାହିଁ | ଅମ୍ଭେମାନେ ଖାଇ ନାହୁଁ । |
| ତୁ ଖାଇ ନାହୁଁ | ତୁମ୍ଭେମାନେ ଖାଇ ନାହଁ । |
| ସେ ଖାଇ ନାହିଁ | ସେମାନେ ଖାଇ ନାହାନ୍ତି । |

ଏହିପରି ଅବଶିଷ୍ଟ କାଳରେ ନଷେଧାର୍ଥ କ୍ରିୟାର ରୂପ ଜାଣିବ ।

### ପ୍ରେରଣାର୍ଥ କ୍ରିୟା ।

୫୩ । କରାଇବା ଅର୍ଥରେ କ୍ରିୟାର ଅନ୍ୟ ପ୍ରକାର ରୂପ ହୁଏ, ସେହି ରୂପକୁ ପ୍ରେରଣାର୍ଥ ବା ଣିଜନ୍ତ କ୍ରିୟା କହନ୍ତି ।

୫୪ । କେତେକ କ୍ରିୟାକୁ ପ୍ରେରଣାର୍ଥ କରିବାକୁ ହେଲେ ମଧ୍ୟ-ବର୍ଣ୍ଣର ସ୍ୱର ଲୋପ କରି "ଆଇ" ଯୋଗ କରିବାକୁ ହୁଏ । ଯଥା;

| | | |
| --- | --- | --- |
| କରିବା | ପ୍ରେରଣାର୍ଥରେ | କରାଇବା । |
| ଉଠିବା | ପ୍ରେରଣାର୍ଥରେ | ଉଠାଇବା । |
| ବସିବା | ପ୍ରେରଣାର୍ଥରେ | ବସାଇବା । |
| ଖେଳିବା | ପ୍ରେରଣାର୍ଥରେ | ଖେଳାଇବା । |
| କରିବା | ପ୍ରେରଣାର୍ଥରେ | କରାଇବା । |
| ବିକିବା | ପ୍ରେରଣାର୍ଥରେ | ବିକାଇବା । |
| ଧରିବା | ପ୍ରେରଣାର୍ଥରେ | ଧରାଇବା । |

ଖାଇବା କ୍ରିୟା ପ୍ରେରଣାର୍ଥରେ ରୂପ

### ଅଦ୍ୟତନ ଭୂତ ।

| ଏକବଚନ | ବହୁବଚନ |
| --- | --- |
| ମୁଁ ଖୁଆଇଲି | ଅମ୍ଭେମାନେ ଖୁଆଇଲୁଁ |
| ତୁ ଖୁଆଇଲୁ | ତୁମ୍ଭେମାନେ ଖୁଆଇଲ । |
| ସେ ଖୁଆଇଲା | ସେମାନେ ଖୁଆଇଲେ । |

ବିଶୁଦ୍ଧ ବର୍ତ୍ତମାନ ।

| ଏକବଚନ | ବହୁବଚନ |
|---|---|
| ମୁଁ ଖୁଆଉଅଛି | ଆମ୍ଭେମାନେ ଖୁଆଉଅଛୁଁ । |
| ତୁ ଖୁଆଉଅଛୁ | ତୁମ୍ଭେମାନେ ଖୁଆଉଅଛ । |
| ସେ ଖୁଆଉଅଛି | ସେମାନେ ଖୁଆଉଅଛନ୍ତି । |

ଶୁଦ୍ଧ ଭବିଷ୍ୟତ୍ ।

| ଏକବଚନ | ବହୁବଚନ |
|---|---|
| ମୁଁ ଖୁଆଇବି | ଆମ୍ଭେମାନେ ଖୁଆଇବୁଁ । |
| ତୁ ଖୁଆଇବୁ | ତୁମ୍ଭେମାନେ ଖୁଆଇବ । |
| ସେ ଖୁଆଇବ | ସେମାନେ ଖୁଆଇବେ । |

ଏହିରୂପେ ଅବଶିଷ୍ଟ କାଳରେ ରୂପ ଜାଣିବ ।

୫୫ । କର୍ତ୍ତୃବାଚ୍ୟ କ୍ରିୟାର ଧାତୁରୁ ଉତ୍ତର ଆ ଏବଂ ତ ଏହି କୃତ୍ ପ୍ରତ୍ୟୟ କର ତଦନନ୍ତର ହୁ, ଗମ୍, ପତ୍, ଯା ଇତ୍ୟାଦି ଧାତୁର ପ୍ରୟୋଗ କର କର୍ମବାଚ୍ୟ କ୍ରିୟାର ରୂପ କରିବାକୁ ହେବ । ଯଥା; ଧରା ହେବ, ଧରା ଗଲା, ଧରା ପଡ଼ିବ, ଧରା ଯାଇଥିବ ।

୫୬ । ତ ପ୍ରତ୍ୟୟ ଉତ୍ତାରୁ କେବଳ ପ୍ରାୟ ହୁ ଧାତୁର କ୍ରିୟା ଯୋଗ କର କର୍ମବାଚ୍ୟରେ ରୂପ କରାଯାଏ । ଯଥା; ଧୃତ ହୋଇଥିଲା, ମୃତ ହୋଇଥିବ, ପ୍ରସ୍ତୁତ ହେବ ଇତ୍ୟାଦି ।

କର୍ମବାଚ୍ୟ ।

ସ୍ୱାର୍ଥ ନିୟମ ।

ଧାତବା କ୍ରିୟା ।

ବିଶୁଦ୍ଧ ବର୍ତ୍ତମାନ କାଳ ।

| ଏକବଚନ | ବହୁବଚନ |
|---|---|
| ଗୋବିନ୍ଦଦ୍ୱାରା ମୁଁ ଧରା ଯାଉଅଛି | ଆମ୍ଭେମାନେ ଧରା ଯାଉଅଛୁଁ । |

ଗୋବିନ୍ଦଦ୍ୱାରା ତୁ ଧରାଯାଉଅଛୁ ତୁମ୍ଭେମାନେ ଧରା ଯାଉଅଛ ।
,, ସେ ଧରା ଯାଉଅଛି ସେମାନେ ଧରା ଯାଉଅଛନ୍ତି ।

ଅଦ୍ୟତନ ଭୂତ ।

| ଏକବଚନ | | ବହୁବଚନ |
|---|---|---|
| ଗୋବିନ୍ଦଦ୍ୱାରା | ମୁ ଧରାଗଲି | ଅମ୍ଭେମାନେ ଧରାଗଲୁ । |
| ,, | ତୁ ଧରାଗଲୁ | ତୁମ୍ଭେମାନେ ଧରାଗଲ । |
| ,, | ସେ ଧରାଗଲା | ସେମାନେ ଧରାଗଲେ । |

ଶୁଦ୍ଧ ଭବିଷ୍ୟତ୍ ।

| ଏକବଚନ | | ବହୁବଚନ |
|---|---|---|
| ଗୋବିନ୍ଦଦ୍ୱାରା | ମୁ ଧରାଯିବି | ଅମ୍ଭେମାନେ ଧରାଯିବୁଁ । |
| ,, | ତୁ ଧରାଯିବୁ | ତୁମ୍ଭେମାନେ ଧରାଯିବ । |
| ,, | ସେ ଧରାଯିବ | ସେମାନେ ଧରାଯିବେ । |

ଏହିରୂପେ ଅବଶିଷ୍ଟ କାଳରେ ରୂପ କରିବାକୁ ହେବ । ଶକ୍ତ୍ୟର୍ଥ ଓ ଅଶଂସାର୍ଥ କ୍ରିୟାରେ ରୂପ କଲେ ତହିଁରେ ତହ ଲଗାଇ କାର୍ଯ୍ୟ କରିବାକୁ ହେବ ।

କୃଦନ୍ତ ।

କର୍ତ୍ତୃବାଚ୍ୟ ଅସମାପିକା କ୍ରିୟା ।

ଭୂତକାଳ ଅସମାପିକା କ୍ରିୟା—ଖାଇ, ଖାଇଣ, ଖାଇକରି, ଖାଅନ୍ତେ ।

ଭୂତକାଳର ନିତ୍ୟ ଅସମାପିକା କ୍ରିୟା—ଖାଇ୨, ଖାଇ୨କା ।

ବର୍ତ୍ତମାନ ଅସମାପିକା କ୍ରିୟା—ଖାଉଁ, ଯଥା; କଥା ନ କହୁଁ ରାମ ଆସିଗଲା ।

ନିତ୍ୟ ବର୍ତ୍ତମାନ ଅସମାପିକା କ୍ରିୟା—ଖାଉ୨ ।

ଭବିଷ୍ୟତ୍ କାଳର ସମ୍ଭାବ୍ୟ ଅସମାପିକା କ୍ରିୟା—ଖାଇଲେ ।

ଭୂତକାଳର ସମ୍ଭାବ୍ୟ ଅସମାପିକା କ୍ରିୟା—ଖାଇଥିଲେ, ଖାଉଥିଲେ ।

ଭବିଷ୍ୟତ୍କାଳର ନିମିତ୍ତାର୍ଥ କୃଦନ୍ତ ଅସମାପିକା କ୍ରିୟା—ଖାଇବାକୁ

ବର୍ତ୍ତମାନ କାଳର ନିଷେଧାର୍ଥ ଅସମାପିକା କ୍ରିୟା—ନ ଖାଉଣୁ, ନୋହୁଣୁ ।

ପ୍ରେରଣାର୍ଥ ଅସମାପିକା କ୍ରିୟା—ଖୁଆଇ, ଖୁଆଇ କରି ।

କର୍ମବାଚ୍ୟ ଅସମାପିକା କ୍ରିୟା—କରାଯାଇ, ଧୃତ ହୋଇ, ଧୃତ ହେଲେ, ଧୃତ ହେବାକୁ ଇତ୍ୟାଦି ।

ପ୍ରଶ୍ନ ।

କାଳ କାହାକୁ କହନ୍ତି ? କାଳ କେତେ ଗୋଟି ? ପ୍ରତ୍ୟେକର ସୂତ୍ର କହି ଚିହ୍ନ ବୋଲ । ବସିବା, ଉଠିବା, ପଢ଼ିବା, ଲେଖିବା, ବୁଲିବା, ଆସିବା, ଯିବା, ନେବା, ପଡ଼ିବା, କ୍ରିୟାର ତିନି କାଳ କିରୂପେ ରୂପ ହେବ ? ଭୂତକାଳ କେତେ ଶ୍ରେଣୀରେ ବିଭକ୍ତ ? ପ୍ରତ୍ୟେକର ନାମ କହ । ବର୍ତ୍ତମାନ କେତେ ପ୍ରକାର ? ପ୍ରତ୍ୟେକର ସୂତ୍ର କହ । ଭବିଷ୍ୟତ୍କାଳ କେତେ ଭାଗରେ ବିଭକ୍ତ ? ଭାଙ୍ଗିବା, ଧରିବା, ଆଣିବା ଓ ଡାକିବା କ୍ରିୟାକୁ କର୍ତ୍ତୃବାଚ୍ୟ ସ୍ୱାର୍ଥ ନିୟମ, ନିତ୍ୟପ୍ରବୃତ୍ତ ଭୂତ ଓ ନିତ୍ୟପ୍ରବୃତ୍ତ ବର୍ତ୍ତମାନରେ ରୂପ କର । କର୍ତ୍ତୃବାଚ୍ୟ କ୍ରିୟାକୁ କର୍ମବାଚ୍ୟ କରିବାର ସୂତ୍ର କହି, ଲେଖିବା, ଦେଖିବା ଓ ଶୁଣିବା କ୍ରିୟାକୁ କର୍ମବାଚ୍ୟ, ସ୍ୱାର୍ଥନିୟମ, ଆନୁମାନିକ ଭୂତ ଓ ଆନୁମାନିକ ବର୍ତ୍ତମାନରେ ରୂପ କର । ପ୍ରେରଣାର୍ଥର ଲକ୍ଷଣ କହି କରିବା, ଖାଇବା, ଦେବା, ଓ ଶୋଇବା କ୍ରିୟାକୁ ପ୍ରେରଣାର୍ଥରେ ପରିବର୍ତ୍ତନ କର । ବିକଳ୍ପାର୍ଥ କ୍ରିୟା କିରୂପେ ରୂପ ହୁଏ ? ନିଷେଧାର୍ଥ କ୍ରିୟା କିରୂପେ

କରାଯାଏ ? ତ ପ୍ରତ୍ୟୟ କଲେ କେଉଁ ଧାତୁର କ୍ରିୟା ଯୋଗ କରି କର୍ମବାଚ୍ୟ କରାଯାଏ ?

ତଳଲିଖିତ ବାକ୍ୟ ଗୁଡ଼ିକରେ ଥିବା କ୍ରିୟାର କାଳ, ବାଚ୍ୟ ଓ ନିର୍ଣ୍ଣୟ କର । ମୁଁ କାର୍ଯ୍ୟ ଶେଷ କରିଅଛିଁ । ସେମାନେ ନଦୀରେ ମାଛ ଧରୁଥିଲେ । ମୁଁ ଆପଣା ପାଠ ପ୍ରସ୍ତୁତ କରୁଅଛିଁ । ରାମ କାଲି ଆସିଲା । ତୁମ୍ଭେମାନେ ଏହି ପୁସ୍ତକ ପଢ଼ିଥିଲ । ସେ ଚୋରୀ କରିଥିବ । ଯଦି ସେ ସ୍କୁଲକୁ ଯାଇଥାନ୍ତା ତେବେ ସେ ଆପଣା ପାଠ ପଢ଼ିଥାନ୍ତା । ବିରାଡ଼ି ମାଛ ଖାଇଅଛି । ଛାତ୍ରମାନେ ପଡ଼ାରେ ଦଣ୍ଡାୟମାନ ହେଉଛନ୍ତି । ମୁଁ ଏକ ଘଣ୍ଟାରେ ଏହି ଚିଠି ଲେଖିପାରେଁ । କୁକୁର ମାର୍ଗରେ ଦୌଡ଼ୁଥିଲା । ସେ ନଦୀକି ଯାଉଥିବ । ଏହି ପୁସ୍ତକ ଏକମାସରେ ପଢ଼ାଗଲା । ପୋଲିସଦ୍ୱାରା ଚୋରମାନେ ଧରା ପଡ଼ିଅଛନ୍ତି । ଲୋକମାନେ ବଜାରରୁ ଆସୁଅଛନ୍ତି । ବ୍ୟାଘ୍ର ପ୍ରାଣୀ-ହିଂସା କରେ । ସେ ପ୍ରତ୍ୟହ ଅରଣ୍ୟକୁ ଯାଏ । ତାହାଦ୍ୱାରା କଲମ ପ୍ରସ୍ତୁତ ହେଉଅଛି । ସିଂହଦ୍ୱାରା ବ୍ୟାଘ୍ର ଧୃତ ହେଲା । ସରକାର ଧନ ଓ ପ୍ରାଣର ଅଧିକାରୀ ଅଟନ୍ତି । ସେ ମୋର ନିକଟକୁ ଖଣ୍ଡେ ଚିଠି ଲେଖିବ । ସେମାନେ ନଗରରେ ବାସ କରନ୍ତି । ରାମ ଅନ୍ନ ଖାଇଥିବ । ମଧୁ ବିଦ୍ୟାଳୟକୁ ବା ଯାଇଥିବ । ଗୋବିନ୍ଦ ମୋତେ ଦେଖି ଘରୁ ବା ପଳାଇ ଗଲା ।

### ପୁରୁଷ ।

୯୭ । ନାମବାଚକ ସର୍ବନାମ ପରି କ୍ରିୟାର ତିନିଗୋଟି ପୁରୁଷ ଅଛି । ଅର୍ଥାତ୍; ପ୍ରଥମ ବା ଉତ୍ତମ ପୁରୁଷ, ଦ୍ୱିତୀୟ ବା ମଧ୍ୟମ ପୁରୁଷ ଏବଂ ତୃତୀୟ ବା ଅନ୍ୟ ପୁରୁଷ ।

୯୮ । କର୍ତ୍ତାନୁସାରେ କ୍ରିୟାର ପୁରୁଷ ହୁଏ । ଯଥା; ସେ ଖାଇଲା,

ଖାଇଲା ଅନ୍ୟ ପୁରୁଷ; ତୁ ଖାଇଲୁ, ଖାଇଲୁ ମଧ୍ୟମ ପୁରୁଷ; ମୁ ଖାଇଲି, ଖାଇଲି ଉତ୍ତମ ପୁରୁଷ ।

ବଚନ ।

୯୯ । ବିଶେଷ୍ୟପଦର କ୍ରିୟାରେ ଦୁଇଗୋଟି ବଚନ ଅଛି, ଅର୍ଥାତ୍ ଏକବଚନ ଓ ବହୁବଚନ ।

୧୦୦ । କର୍ତ୍ତାନୁସାରେ କ୍ରିୟାର ବଚନ ହୁଏ । ଯଥା; ସେ ଗଲା, ଗଲା ଏକବଚନ; ଆମ୍ଭେମାନେ ଲେଖୁଁ, ଲେଖୁଁ ବହୁବଚନ ।

ପ୍ରଶ୍ନ ।

କରୂପେ କ୍ରିୟାର ବଚନ ଓ ପୁରୁଷ ଜଣାପଡ଼େ ? କ୍ରିୟାରେ କେତେଗୋଟି ପୁରୁଷ ଓ କେତେଗୋଟି ବଚନ ଥାଏ ?

ନିମ୍ନଲିଖିତ ବାକ୍ୟସମୂହର କ୍ରିୟା କେଉଁ ପୁରୁଷ ଓ କେଉଁ ବଚନାନ୍ତର୍ଗତ ?

ରାଜା ଶତ୍ରୁମାନଙ୍କୁ ଜୟ କରଅଛନ୍ତି । ମୁ ତାହାକୁ ଦେଖିଲି । ସେମାନେ ପାଠଶାଲାରୁ ଆସୁଅଛନ୍ତି । ତୁମ୍ଭେମାନେ ଅନ୍ନ ଭୋଜନ କରୁଅଛ । ମୁ ଗୋଟିଏ କୁକ୍କୁର ପୋଷିଅଛି । ବଳଦମାନେ ନଦୀରେ ଜଳପାନ କରୁଅଛନ୍ତି । ସେ ଗୃତଲ କ୍ରୟ କରୁଅଛନ୍ତି । ରାମ ମୋହୋଠାରେ ଆପଣା ବଳଦକୁ ଟ ୧୦ ରେ ବିକ୍ରୟ କର ଦେଲା । ଅନେକ ଲୋକ ନଦୀରେ ସ୍ନାନ କରୁଅଛନ୍ତି । ପ୍ରାତଃକାଳରେ ପୂର୍ବ-ଦିଗରେ ସୂର୍ଯ୍ୟୋଦୟ ହୁଏ । ପର୍ବତ ଉପରେ ମୟୂରମାନେ ନୃତ୍ୟ କରୁଅଛନ୍ତି ।

---

ଅବ୍ୟୟ ବିଭାଗ ।

୧୦୧ । ଯାହାର ଲିଙ୍ଗ, ବଚନ, ପୁରୁଷ ଓ କାରକ ନ ଥିବାରୁ ଶବ୍ଦରୂପର ନିୟମାନୁସାରେ ଭିନ୍ନ ବିଭକ୍ତିର ଯୋଗ ହୁଅଇ ନାହିଁ

ଏହି ପଦକୁ ଚିହ୍ନ ହେବା ପାଇଁ କେବଳ ପ୍ରଥମା ବିଭକ୍ତିର ଏକବଚନାନ୍ତ ରୂପ ସେ ଅବ୍ୟୟ । ଯଥା; ଓ, ଏବଂ, ଅପି, ଆ ଇତ୍ୟାଦି ।

୧୦୨ । ଅବ୍ୟୟ ଅନେକ ପ୍ରକାର; ତନ୍ମଧ୍ୟରୁ କ୍ରିୟାବିଶେଷଣ, ବିଭକ୍ତିସ୍ୱରୂପକ, ସଂଯୋଜକ, ବିଯୋଜକ, ବିଶେଷଣ, ସମ୍ବୋଧନ, ପ୍ରଶ୍ନୋତ୍ତର ବା ସ୍ୱୀକାରସୂଚକ, ବିସ୍ମୟ ବା ଖେଦସୂଚକ, ନିଶ୍ଚୟାର୍ଥ, ସମ୍ଭାବନା ବା ଅପେକ୍ଷାର୍ଥ, ବିକଳ୍ପାର୍ଥ, ହେତୁସୂଚକ, ହେତ୍ୱର୍ଥ, ଅନୁକରଣ, ବାକ୍ୟାଲଙ୍କାର ଓ ଉପସର୍ଗ ଅବ୍ୟୟ ପ୍ରଧାନ ।

## କ୍ରିୟା ବିଶେଷଣ ଅବ୍ୟୟ ବିଭାଗ ।

୧୦୩ । ଯେଉଁ ଶବ୍ଦ କ୍ରିୟାର, ଗୁଣ, ସମୟ, ଗତି ଓ ରୀତି ପ୍ରକାଶ କରେ ସେ କ୍ରିୟାବିଶେଷଣ ।

୧୦୪ । କ୍ରିୟାବିଶେଷଣ ଛଅ ପ୍ରକାର । ଯଥା; କାଳବାଚକ, ସ୍ଥାନବାଚକ, ପରିମାଣବାଚକ, ଗୁଣାତ୍ମକ କ୍ରିୟାବିଶେଷଣ, ବନ୍ଧୁ-ବୀପ୍ସି ସମାଚାନୁସାର ଓ ପ୍ରକାରାର୍ଥ ।

(କ) କାଳବାଚକ କ୍ରିୟାବିଶେଷଣ—ଏବେ, ତେବେ, କେବେ, କାଲି, ସଦା, ବର୍ତ୍ତମାନ, ପୁନରପି, ପୁଣି, ନିରନ୍ତର, ଯାବତ୍, ତାବତ୍, ନିତ୍ୟ, ବାରମ୍ବାର, ପୁନର୍ବାର, ଏକଦା ଇତ୍ୟାଦି ।

(ଖ) ସ୍ଥାନବାଚକ କ୍ରିୟାବିଶେଷଣ—ଏଠାରେ, ସେଠାରେ, କେଉଁଠାରେ, ଯେଉଁଠାରେ, ସର୍ବତ୍ର, ଇତସ୍ତତଃ, କୁତ୍ରାପି ଇତ୍ୟାଦି ।

(ଗ) ପରିମାଣବାଚକ କ୍ରିୟାବିଶେଷଣ—ଏତେ, ତେତେ, କେତେ, ଯେତେ, ଯେପରି, ସେପରି ଇତ୍ୟାଦି ।

(ଘ) ଗୁଣାତ୍ମକ କ୍ରିୟାବିଶେଷଣ—ଏଥିରେ କେବେ କେବେ ଦେଇ ଓ କରି ବିଭକ୍ତି ଯୋଗ କରାଯାଏ । ଯଥା; ଉତ୍ତମ ଖାଇଲି, ଭଲ କଲା, ସୁନ୍ଦର କରି ପିନ୍ଧ, ମନ ଦେଇ ପଢ଼ ଇତ୍ୟାଦି ।

(ଚ) ବହୁବ୍ରୀହି ସମାସାନୁସାରୀ—ଏଥିରେ "ଏ" ବା "ରେ" ବିଭକ୍ତି ଯୋଗ ହୁଅଇ । ଯଥା; ଆନନ୍ଦ ଚିତ୍ତରେ ଧାଇଁଲା, ପ୍ରିୟ ବଚନରେ କହିଲା, ବିନୟପୂର୍ବକ କହିଲା, ଆନନ୍ଦ ପୁରଃସର ଇତ୍ୟାଦି ।

(ଛ) ପ୍ରକାରାର୍ଥ କ୍ରିୟାବିଶେଷଣ—ଏପ୍ରକାର, ସେପ୍ରକାର, ଯେ-ପ୍ରକାରେ, ଏହିରୂପେ, ସେହିରୂପେ ଇତ୍ୟାଦି ।

୧୦୫ । କ୍ରିୟାବିଶେଷଣ—କ୍ରିୟାର ପୂର୍ବରେ, ବିଶେଷଣୀୟ ବିଶେଷଣ ଓ କ୍ରିୟାବିଶେଷଣର ପୂର୍ବରେ ରହେ । ଯଥା; ଅତି ଦୁଷ୍ଟ, ଅତିଶୀଘ୍ର, ଅଳ୍ପ ଇତ୍ୟାଦି ।

୧୦୬ । ବିଭକ୍ତିସ୍ୱରୂପକ, ସଂଯୋଜକ, ବିଯୋଜକ, କ୍ରିୟାବିଶେ-ଷଣ ଓ ଖେଦସୂଚକ ଅବ୍ୟୟର ବିବରଣ ପୂର୍ବରେ ଲେଖାଅଛୁ ।

## ସମ୍ବୋଧନସୂଚକ ଅବ୍ୟୟ ।

୧୦୭ । ଯେଉଁ ଅବ୍ୟୟ ଡାକିବାରେ ବ୍ୟବହାର କରାଯାଏ ତାକୁ ସମ୍ବୋଧନ ବୋଲାଯାଏ । ଯଥା; ଅହେ, ହେ, ଅହୋ, ଅଗୋ, ଗୋ, ଅବୋ, ବୋ, ଅରେ, ରେ, ଅଲୋ, ଲୋ, ଭୋ, ଅୟେ, ଅୟି ଇତ୍ୟାଦି ।

## ପ୍ରତ୍ୟୁତ୍ତର ବା ସ୍ୱୀକାରସୂଚକ ଅବ୍ୟୟ ।

୧୦୮ । ଯାହାଦ୍ୱାରା ପ୍ରତ୍ୟୁତ୍ତର ବା ସ୍ୱୀକାର ଜଣାଯାଏ ସେ ସ୍ୱୀକାର-ସୂଚକ ଅବ୍ୟୟ । ଯଥା; ଆଜ୍ଞା, ଅବଧାନ, ଓ, ଉ, ହଁ, ଜି, କଣ ଇତ୍ୟାଦି ।

## ନିଶ୍ଚୟାର୍ଥ ଅବ୍ୟୟ ।

୧୦୯ । ଯାହାଦ୍ୱାରା କୌଣସି ବିଷୟ, ବା କ୍ରିୟାର ନିଶ୍ଚୟ ହେ-ବାର ଜଣାଯାଏ ସେ ନିଶ୍ଚୟାର୍ଥ ଅବ୍ୟୟ । ଯଥା; ଅବଶ୍ୟ, ନିଶ୍ଚେ, ନିଶ୍ଚୟ, କଦାପି, ନିଶ୍ଚୟ, ସିନା, ସୁଦ୍ଧା, ହିଁ, ହେଁ, ଇ, ବି, ବସ୍ତୁ ଇତ୍ୟାଦି ।

ସମ୍ଭାବନା ବା ଅପେକ୍ଷାର୍ଥ ।

୧୧୦ । ଯେ ବାକ୍ୟ ମଧ୍ୟରେ ଥାଇ ଆପଣା ସଦୃଶ ପଦକୁ ଅପେକ୍ଷା କରେ ସେ ସମ୍ଭାବନାର୍ଥ ବା ଅପେକ୍ଷାର୍ଥ ଅବ୍ୟୟ । ଯଥା; ତଥାପି, ତଥାପି, ତଥାଚ, ଯଦି, ଯଦିସ୍ୟାତ୍, ଯଦ୍ୟପି, ଯଦିଚ, ଯେବେ, ଯେବେହେଁ, ତେବେହେଁ, ବରଂ, ବରଞ୍ଚ, ଅପେକ୍ଷା, ଠାରୁ ଇତ୍ୟାଦି ।

ବିକଳ୍ପାର୍ଥ ଅବ୍ୟୟ ।

୧୧୧ । ଯାହାଦ୍ୱାରା କାହାର ବିକଳ୍ପ ଅର୍ଥାତ୍ ସଂଶୟ ଜଣାଯାଏ ତାହାକୁ ବିକଳ୍ପାର୍ଥ ଅବ୍ୟୟ କୁହାଯାଏ । ଏହି ଅବ୍ୟୟ ପଦମାନେ କ୍ରିୟାର ପୂର୍ବ ବା ପରବର୍ତ୍ତୀ ହେଲେ ବିକଳ୍ପାର୍ଥ ଅବ୍ୟୟ, ଆଉ ଦୁଇ ସଞ୍ଜ୍ଞାର ମଧ୍ୟବର୍ତ୍ତୀ ହେଲେ ବିଯୋଜକ ବୋଲାଯାନ୍ତି । ଯଥା; ବା, ଅବା, ଅଥବା, କି, କିମ୍ବା, କିଅବା, କିବା, ନାହୁବା, ପ୍ରାୟ, ପରା, ନଚେତ୍ ଇତ୍ୟାଦି ।

୧୧୨ । ହେତୁସୂଚକ ଅବ୍ୟୟ—ଯେହେତୁ, ସେହେତୁ, ଅତଏବ, ଏଣୁକରି, କିପାଁକି, କାହିଁକି, କାହିଁକନା ଇତ୍ୟାଦି ।

[ ହେତ୍ୱର୍ଥ ଅବ୍ୟୟ—ହେତୁ, କାରଣ, ସକାଶେ, ନିମିତ୍ତ, ଲାଗି, ପାଇଁ, ଯୋଗୁଁ, ଅର୍ଥ, ଅର୍ଥେ ଇତ୍ୟାଦି ।]

୧୧୩ । ଅନୁକରଣ ଅବ୍ୟୟ—ଯଥା; କଟ୍‌କଟ୍, ମଟ୍‌ମଟ୍, ଉଁଉଁ, ସଁସଁ, ସର୍ସର, ସର୍‌ସର୍ ଇତ୍ୟାଦି ।

ବାକ୍ୟାଲଙ୍କାର ଅବ୍ୟୟ ।

୧୧୪ । ଯାହାଦ୍ୱାରା କୌଣସି ଅର୍ଥ ଜଣାଯାଏ ନାହିଁ, କେବଳ ବାକ୍ୟର ଶୋଭାମାତ୍ର ହୁଅଇ ସେ ବାକ୍ୟାଲଙ୍କାର । ଯଥା; ସେ ଆସୁଛ ମୁ ଯିବି, ଏଠାରେ ତ ବାକ୍ୟାଲଙ୍କାର, ମୁହିଁ ଯିବି, ହି ବାକ୍ୟାଲଙ୍କାର ।

ଉପସର୍ଗ ଅବ୍ୟୟ ।

୧୧୫ । ଉପସର୍ଗ ଅବ୍ୟୟ ଉପସର୍ଗ ଯୋଗରେ ଧାତ୍ୱର୍ଥର ବାଧା



ହୁଏ, କୌଣସି ଠାରେ ଧାତୁର ଅର୍ଥ ବିଶେଷ ଏବଂ କୌଣସି ଠାରେ ଅନୁଗାମୀ ହୁଏ, ତାହା ୨୦ ଗୋଟି । ଯଥା; ପ୍ର, ପରା, ଅପ, ନି, ଅଧି, ସୁ, ନିର, ଉତ୍ , ପରି, ପ୍ରତି, ଅବ, ଅନୁ, ଆ, ଦୁର, ବି, ସମ୍, ଅଭି, ଅତି, ଉପ, ଅପି ।

ପ୍ରଶ୍ନ ।

ଅବ୍ୟୟ କାହାକୁ କହି ? ତାହା କେତେପ୍ରକାର ? କ୍ରିୟାବିଶେଷଣ କେତେପ୍ରକାର ? ପ୍ରତ୍ୟେକ ପ୍ରକାରରୁ ୩ ଗୋଟି ଲେଖାଏଁ ଉଦାହରଣ ଦିଅ । ବିକଳ୍ପାର୍ଥ ଓ ବିଯୋଜକ ଅବ୍ୟୟ ଲକ୍ଷଣ କି ? ସେହି ଦୁଇ ଅବ୍ୟୟର ତାରତମ୍ୟ ସ୍ପଷ୍ଟରୂପେ ବୋଲ । ଉପସର୍ଗ ଯୋଗରେ ଧାତ୍ୱର୍ଥରେ କି ଅବସ୍ଥା ଘଟେ ?

ଅନ୍ୱୟ ଧାରା ।

୧ । ବିଶେଷ୍ୟ—ଜାତି, ଲିଙ୍ଗ, ପୁରୁଷ, ବଚନ, କାରକ, କ୍ରିୟା ସହିତ ଅନ୍ୱିତ । ସମ୍ବନ୍ଧ ପଦ ହେଲେ ପରବର୍ତ୍ତୀ ବିଶେଷ୍ୟ ସହିତ ଅନ୍ୱିତ ।

୨ । ସର୍ବନାମ—ଜାତି, ଲିଙ୍ଗ, ପୁରୁଷ, ବଚନ, କାରକ, କ୍ରିୟା ସହିତ ଅନ୍ୱିତ । ସମ୍ବନ୍ଧ ପଦ ହେଲେ ପରବର୍ତ୍ତୀ ବିଶେଷ୍ୟ ସହିତ ଅନ୍ୱିତ ।

୩ । ବିଶେଷଣ—ଜାତି, ବିଶେଷ୍ୟ ବା ସର୍ବନାମ ସହିତ ଅନ୍ୱିତ ।

୪ । କ୍ରିୟା—ଜାତି, ବାଚ୍ୟ, ନିୟମ, କାଳ, ପୁରୁଷ, ବଚନ, କର୍ତ୍ତା ସହିତ ଅନ୍ୱିତ ।

୫ । କ୍ରିୟାବିଶେଷଣ—ଜାତି, କ୍ରିୟା ସହିତ ଅନ୍ୱିତ ।

୬ । ସଂଯୋଜକ—ଏହା ପୂର୍ବପଦ ଓ ପରପଦ ବା ପୂର୍ବବାକ୍ୟ ଓ ପରବାକ୍ୟକୁ ଯୋଗ କରୁଅଛି ।

୭ । ବିଯୋଜକ—ଏହା ପୂର୍ବପଦ ଓ ପରପଦ ବା ପୂର୍ବବାକ୍ୟ ଓ ପରବାକ୍ୟକୁ ବିଯୋଗ କରୁଅଛି ।

୮ । ଅସମାପିକା କ୍ରିୟା—କର୍ତ୍ତା ସହିତ ଅନ୍ୱିତ ।

୯ । ବିସ୍ମୟାଦିସୂଚକ ଅବ୍ୟୟ—ଇହାଦ୍ୱାରା ବକ୍ତା ବା ଶ୍ରୋତାର ବିସ୍ମୟ ମାତ୍ର ଜଣାଯାଏ ।

ଉଦାହରଣ ।

ଶ୍ରୀ ରାମଚନ୍ଦ୍ର ସୁବିସ୍ତୀର୍ଣ୍ଣ ମହାର୍ଣ୍ଣବ ପାର ହୋଇ ରାବଣର ରାଜଧାନୀରେ ପ୍ରବେଶ ହୋଇ ଏବଂ ଘୋରତର ଯୁଦ୍ଧରେ ତାହାଙ୍କୁ ବଧ କରି ସୀତାଙ୍କୁ ଉଦ୍ଧାର କଲେ ।

୧ । ଶ୍ରୀ ରାମଚନ୍ଦ୍ର—ନାମବାଚକ ବିଶେଷ୍ୟ, ପୁଂଲିଙ୍ଗ, ଅନ୍ୟ-ପୁରୁଷ, ଏକବଚନ, କର୍ତ୍ତୃ କାରକ, ପ୍ରବେଶ ହେଲେ ଏବଂ ଉଦ୍ଧାର କଲେ କ୍ରିୟା ସହିତ ଅନ୍ୱିତ ।

୨ । ସୁବିସ୍ତୀର୍ଣ୍ଣ—ବିଶେଷଣ, ମହାର୍ଣ୍ଣବକୁ ବିଶେଷ କରୁଅଛି ।

୩ । ମହାର୍ଣ୍ଣବ—ଦ୍ରବ୍ୟବାଚକ ସଞ୍ଜ୍ଞା, ପୁଂଲିଙ୍ଗ, ଅନ୍ୟ ପୁରୁଷ, ଏକବଚନ, କର୍ମକାରକ, ପାର ହୋଇ ଅସମାପିକା କ୍ରିୟା ସହିତ ଅନ୍ୱିତ ।

୪ । ପାର ହୋଇ—କର୍ତ୍ତୃବାଚ୍ୟର ସକର୍ମକ ଅସମାପିକା କ୍ରିୟା, ଶ୍ରୀ ରାମଚନ୍ଦ୍ର ସହିତ ଅନ୍ୱିତ ।

୫ । ରାବଣର—ନାମବାଚକ ବିଶେଷ୍ୟ, ପୁଂଲିଙ୍ଗ, ଅନ୍ୟ ପୁରୁଷ, ଏକବଚନ, ସମ୍ବନ୍ଧ ପଦ, ରାଜଧାନୀରେ ସହିତ ଅନ୍ୱିତ ।

୬ । ରାଜଧାନୀରେ—ଜାତିବାଚକ ସଞ୍ଜ୍ଞା, ପୁଂଲିଙ୍ଗ, ଅନ୍ୟ ପୁରୁଷ, ଏକବଚନ, ଅଧିକରଣ କାରକ, ପ୍ରବେଶ ହେଲେ କ୍ରିୟା ସହିତ ଅନ୍ୱିତ ।

୭ । ପ୍ରବେଶ ହେଲେ—କର୍ତ୍ତୃବାଚ୍ୟ, ଅକର୍ମକ କ୍ରିୟା, ସ୍ୱାର୍ଥନିଷ୍ପନ୍ନ, ଅବ୍ୟବହିତ ଭୂତକାଳ, ଅନ୍ୟ ପୁରୁଷ, ମାନ୍ୟାର୍ଥ ଏକବଚନ, ଶ୍ରୀରାମଚନ୍ଦ୍ର ସହିତ ଅନ୍ୱିତ ।

୮ । ଏବଂ—ସଂଯୋଜକ ଅବ୍ୟୟ, ଶ୍ରୀ ରାମଚନ୍ଦ୍ର ସୁବିସ୍ତୀର୍ଣ୍ଣ ମହାର୍ଣ୍ଣବ ପାର ହୋଇ ରାବଣର ରାଜଧାନୀରେ ପ୍ରବେଶ ହେଲେ;

ଘୋରତର ଯୁଦ୍ଧରେ ତାହାଙ୍କୁ ବଧ କରି ସୀତାଙ୍କୁ ଉ-
ଦ୍ଧାର କଲେ, ଏହି ଦୁଇ ବାକ୍ୟକୁ ଯୋଗ କରୁଅଛୁ ।

୯ । ଘୋରତର—ଗୁଣବାଚକ, ଯୁଦ୍ଧରେ ସହିତ ଅନ୍ୱିତ ।

୧୦ । ଯୁଦ୍ଧରେ—ଜାତିବାଚକ ସଂଜ୍ଞା, ପୁଂଲିଙ୍ଗ, ଅନ୍ୟ ପୁରୁଷ,
ଏକବଚନ, ଅଧିକରଣ କାରକ, ଉଦ୍ଧାର କଲେ
କ୍ରିୟା ସହିତ ଅନ୍ୱିତ ।

୧୧ । ତାହାଙ୍କୁ—ନାମବାଚକ ସର୍ବନାମ, ପୁଂଲିଙ୍ଗ, ଅନ୍ୟ ପୁରୁଷ,
ଏକବଚନ, କର୍ମକାରକ, ବଧ କରି ଅସମାପିକା
କ୍ରିୟା ସହିତ ଅନ୍ୱିତ ।

୧୨ । ବଧ କରି—କର୍ତ୍ତୃବାଚ୍ୟର ସକର୍ମକ ଅସମାପିକା କ୍ରିୟା, ଶ୍ରୀ
ରାମଚନ୍ଦ୍ର ସହିତ ଅନ୍ୱିତ ।

୧୩ । ସୀତାଙ୍କୁ—ନାମବାଚକ ବିଶେଷ୍ୟ, ସ୍ତ୍ରୀଲିଙ୍ଗ, ଅନ୍ୟ ପୁରୁଷ,
ଏକବଚନ, କର୍ମ କାରକ, ଉଦ୍ଧାର କଲେ କ୍ରିୟା
ସହିତ ଅନ୍ୱିତ ।

୧୪ । ଉଦ୍ଧାର କଲେ—କର୍ତ୍ତୃବାଚ୍ୟ, ସକର୍ମକ କ୍ରିୟା, ସ୍ୱାର୍ଥନିର୍ଣ୍ଣୟ,
ଅଦ୍ୟତନ ଭୂତକାଳ, ଅନ୍ୟ ପୁରୁଷ, ମାନ୍ୟାର୍ଥ
ଏକବଚନ, ଶ୍ରୀ ରାମଚନ୍ଦ୍ର ସହିତ ଅନ୍ୱିତ ।

ପ୍ରଶ୍ନ ।

ଉପରୋକ୍ତ ଧାରାନୁସାରେ ନିମ୍ନପ୍ରକଟିତ ବାକ୍ୟ ସକଳକୁ ସମ୍ପୂର୍ଣ୍ଣ
ଅନ୍ୱୟ କର ।

ଗୋପାଳ ମୋତେ ଡାକିଲା । ବସନ୍ତକାଳରେ ବୃକ୍ଷରେ ନୂତନ
ପତ୍ର ଜାତ ହୁଏ । ବର୍ଷାକାଳରେ ସରୋବର, ନଦୀ ଓ କୂପାଦି ଜଳରେ
ପରିପୂର୍ଣ୍ଣ ହୋଇଥାଏ । ମହାରାଜ ଅଜଙ୍କର ଦଶରଥ ନାମରେ
ଗୋଟିଏ ପୁତ୍ର ଥିଲେ । ଦଶରଥ ରାଜା କେକେ ନାରୀବଶ ହେବାରୁ
ତାହାଙ୍କ ଜ୍ୟେଷ୍ଠତନୟ ଶ୍ରୀରାମଚନ୍ଦ୍ରଙ୍କୁ ବନବାସ କରିବାକୁ ହୋଇ-

ଥିଲା । ଯେଉଁ ବାଳକ ବାଲ୍ୟକାଳରେ ବିଦ୍ୟାଭ୍ୟାସ ନ କରେ ଓ ଯୌବନାବସ୍ଥାରେ ଧନୋପାର୍ଜ୍ଜନ ନ କରେ ସେ ଭବିଷ୍ୟ ସମୟରୁ ନିତାନ୍ତ କଷ୍ଟ ଭୋଗ କରେ । ଯେଉଁ ଲୋକ ଆପତ୍କାଳରେ ସାହାଯ୍ୟ କରେ ସେ କେବଳ ଯଥାର୍ଥ ବନ୍ଧୁ ଅଟେ । ମନୋଯୋଗୀ ବାଳକମାନେ ଯଥାର୍ଥ ସମୟରେ ବିଦ୍ୟାଳୟକୁ ଆସନ୍ତି । ମନୁଷ୍ୟ ଜ୍ଞାନ ହେତୁରୁ ଅନ୍ୟାନ୍ୟ ପ୍ରାଣୀଙ୍କଠାରୁ ଶ୍ରେଷ୍ଠ ଅଟେ । ତୁମ୍ଭର ପୁତ୍ର ଓ କନ୍ୟା ପରିଶ୍ରମ ପୂର୍ବକରେ ବିଦ୍ୟାଭ୍ୟାସ କରୁଅଛନ୍ତି । ବିଦ୍ୟା ମନୁଷ୍ୟର ପ୍ରଧାନ ଭୂଷଣ ଅଟେ । ଯେତେବେଳେ ତୁମ୍ଭେ ବିଦ୍ୟାଳୟକୁ ଯିବାକୁ ଯିବ ତେତେବେଳେ ମୋତେ ଡାକିବ । ଅକାରଣରେ କାଳକ୍ଷେପଣ କରିବା ବାଳକମାନଙ୍କର ଉଚିତ ନୁହେ । ଯଦି ତୁମ୍ଭେ ଶୀଘ୍ର ଆସିବ ତେବେ ଆମ୍ଭେ ତୁମ୍ଭଙ୍କୁ ଖଣ୍ଡେ ନୂତନ ପୋଥି ଦେବୁଁ । ସେ ଗୃହକୁ ଯାଇ ଅନ୍ନ ଭୋଜନ କଲା । କରୁଣାସିନ୍ଧୁ ପରମେଶ୍ୱର ଏହି ଅସୀମ ବ୍ରହ୍ମାଣ୍ଡକୁ ସୃଷ୍ଟି କରି ପ୍ରାଣୀମାନଙ୍କୁ ପ୍ରତିପାଳନ କରୁଅଛନ୍ତି । ଆପଣଙ୍କ ଆଦେଶାନୁସାରେ ଆମ୍ଭେ ଏହି ପୁସ୍ତକ ରଚନା କଲୁଁ ।

ସମ୍ପୂର୍ଣ୍ଣ ।

